# ପୃଥିବୀର ଲୋକକଥା

( କାଶ୍ମୀରର ଲୋକକଥା )

[ ୧ମ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି., ଏଲ୍.ଏଲ୍. ବି.
ଓ. ଏସ୍. ଜେ. ଏସ୍. (ରିଟାର୍ଡ଼)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

( Kashmir Lokakatha )

First Part

# ପୃଥିବୀର ଲୋକକଥା

( କାଶ୍ମୀରର ଲୋକକଥା )

ପ୍ରଥମ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ଦଖାଳ, ପୋ: ଦଖାଳ, ପୁରୀ

ପ୍ରଥମ ସଂସ୍କରଣ : ୧୯୮୯, ମହାବିଷୁବ ସଂକ୍ରାନ୍ତି
ଦ୍ୱିତୀୟ ସଂସ୍କରଣ : ୨୦୦୩, ଦୋଳ ପୂର୍ଣ୍ଣିମା

ପ୍ରଚ୍ଛଦପଟ — ଶ୍ରୀ ଭବନାରାୟଣ ନାୟକ

ମୁଦ୍ରଣ : କେ.ବି.ଏସ୍. ପ୍ରିଣ୍ଟର୍ସ
ଓଗରପଡ଼ା, କଟକ-୨

ମୂଲ୍ୟ—୧୨ ଟଙ୍କା

# ସୂଚୀପତ୍ର





# ମୁଖବନ୍ଧ

ଭୂସ୍ୱର୍ଗ କାଶ୍ମୀର ଭାରତର ଏକ ଅବଚ୍ଛେଦ ଅଙ୍ଗ । ଏଠାକାର ଅଧିବାସୀ ଅଧିକାଂଶ ମୁସଲମାନ । ଭାରତ ଭାଗ-ଭାଗ ହେବାପରେ କାଶ୍ମୀରର ଲୋକେ ଏହାର ଧର୍ମନିରପେକ୍ଷତା ଯୋଗୁଁ ଏଥିରେ ଯୋଗଦେଲେ । ପାକିସ୍ତାନ ମୁସଲମାନଙ୍କର ରାଜ୍ୟ । ଯେହେତୁ କାଶ୍ମୀରରେ ଅଧିକାଂଶ ମୁସଲମାନ । ଏଣୁ ପାକିସ୍ତାନ କାଶ୍ମୀରକୁ ନେବାକୁ ଦାବି କରିଆସୁଛି ।

ଭାରତ ଏକ ମହାନ ଦେଶ । ଏହାର ସହନଶୀଳତା ଓ ସଦ୍ଭାବସ୍ଥାନ ପୃଥିବୀରେ ଅନନ୍ୟ । ପୃଥିବୀର ବଶିଷ୍ଟ ଐତିହାସିକ ଟଏନବିଙ୍କ ମତରେ ହିନ୍ଦୁ ଧର୍ମ ପୃଥିବୀର ସର୍ବଶ୍ରେଷ୍ଠ ଧର୍ମ । ଏହା ସଦ୍ଭାବସ୍ଥାନର ପରିପୃକ୍ତ । ଏହାର ମୀତ ଅହିଂସା । ଏହି ଧର୍ମ ଭାରତରୁ ଉଦ୍ଭବ ।

ଧର୍ମର ଲକ୍ଷ୍ୟ ମୋକ୍ଷ । ମୋକ୍ଷପାଇଁ ଅନୁସୃତ ମାର୍ଗହିଁ ଧର୍ମ । ଏ ଦେଶର ମହାନ୍ ସଂସ୍କୃତିର ଲୋକଚଳଣୀ ପ୍ରତିଫଳିତ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ବୌଦ୍ଧ, ଜୈନ, ପାର୍ଶିମାନେ ଏ ଦେଶର ସଂସ୍କୃତିକୁ ଗ୍ରହଣ କରି ନେଇଛନ୍ତି । ଲୋକକଥା ଏ ସଂସ୍କୃତିର ଜ୍ୱଳନ୍ତ ନିଦର୍ଶନ ।

କାଶ୍ମୀର ଲୋକକଥା କାଶ୍ମୀର ସଂସ୍କୃତିର ଅବଦାନ । ଏସବୁ ଅନୁଧ୍ୟାନ ଯୋଗ୍ୟ । ଆମର ଓ କାଶ୍ମୀରର ସଂସ୍କୃତି ଏକ ଓ ଅଭିନ୍ନ । ଏହାହିଁ ତାର ପ୍ରମାଣ ।

ଲକ୍ଷ୍ମୀଧର ମହାନ୍ତି

# ରାକ୍ଷସ

ଶୀତଋତୁର ଆରମ୍ଭ । କାଶ୍ମୀରରେ ବରଫ ପଡ଼ିବାକୁ ଲାଗିଲାଣି । ସବୁଜ ଉପତ୍ୟକାର ରଙ୍ଗ ବଦଳୁଛି । ଯୁଆଡ଼େ ଅନାଇବ ଖାଲି ଧଳା । ସବୁ ବରଫରେ ଆଚ୍ଛାଦିତ ।

କାଶ୍ମୀରର ଅଧିକାଂଶ ଲୋକେ ଚାଷୀ । ଶୀତଋତୁ କହିଲେ ଚାରିମାସ । ଏ ସମୟରେ ଜମି ଉପରେ ବରଫ ପଡ଼ିରହେ । ଚାଷ କାମ କିଛି କରିହୁଏ ନାହିଁ । ତେଣୁ ଲୋକମାନେ ଚାରିମାସ ବେକାର । କେବଳ ବସି ବସି ସମୟତକ କଟାନ୍ତି । ବିନା କାମରେ ବସି ରହିଲେ, ଶୀତ ବେଶୀ ହୁଏ । ତେଣୁ ପୋଷାକ ତଳେ ଉନ୍ମେଇଟି ରଖି ସେମାନେ ଗୋଟିଏ ଗୋଟିଏ ଜାଗାରେ ବସିଯାନ୍ତି । ଖାଲିରେ ବସି ରହିଲେ କ'ଣ ସମୟ କଟିବ ? ସେଥିପାଇଁ ଗପ ଚାଲେ । ବାର ଆଡ଼ର ବାର କଥା । ସେ ଗପର ଆଦି ନାହିଁ କି ଅନ୍ତ ନାହିଁ । ତଥାପି ସେ ଗପ ଜମେ । କିନ୍ତୁ ବେଳେ ବେଳେ ଗପିବାକୁ କିଛି ନଥାଏ । କ'ଣ ଗପିବେ ସେମାନେ ଜାଣିପାରନ୍ତି ନାହିଁ । ଖାଲି ଚୁପ୍ ହୋଇ ବସିରହନ୍ତି ।

ଏଇ ସମୟରେ ପଚିଶ ଲୋକ କାଶ୍ମୀରର ଗୋଟିଏ ଗାଁରେ ବସିଥିଲେ । ଗପ ପାଇଁ ଯାହା ପାଖରେ ଯାହା ଥିଲା, ସେସବୁ ସେମାନେ ଗପି ଦେଇଥାଆନ୍ତି । ସେଠାରେ ସେମାନେ ଖାଲି ଚୁପ୍ ହୋଇ ବସି ରହିଥିଲେ । ଏଇ ସମୟରେ ଗୋଟିଏ ବାଟୋଇ ସେଠାରେ ପହଞ୍ଚିଲା । ତାକୁ ଦେଖି ସମସ୍ତେ ଖୁସି । ସାଥେ ସାଥେ ତାକୁ ହୁକା ଟାଣିବାକୁ ଦେଲେ । ସେଇଟା କାଶ୍ମୀର ଲୋକଙ୍କର ଚଳଣି ।

ଦି' ଦମ୍ ହୁକା ଟାଣି ସେ ଲୋକଟି ଆଶ୍ୱସ୍ତ ହେଲା । ତାପରେ

ସେ ଠିକଏ ଆଗମ କଲା । ଲୋକଙ୍କର ତ ଗପ ଦରକାର । ତେଣୁ ଜଣେ ତାକୁ ପଚାରିଲା—"ଭାଇ କେଉଁଠୁ ଆସିଲ ?"

ଲୋକଟି କହିଲା—"ଉଦ୍ଧାମପୁରରୁ ।"

ଆଉ ଜଣେ ପଚାରିଲା—"ସେଠାକାର ହାଲଚାଲ କ'ଣ ?"

ଲୋକଟି ଚାରିଆଡ଼କୁ ଚାହିଁଲା । ଉଦ୍ଧାମପୁର ନାଁ ଶୁଣି ସତେ ଯେମିତି ସେ ଡରିଗଲା । ସେ ଫୁସ୍ ଫୁସ୍ କରି କହିଲା—"ସେଠାକାର ଅବସ୍ଥା ବଡ଼ ସାଙ୍ଘାତିକ । ସେଠା ଲୋକମାନେ ଗୋଟିଏ ବଡ଼ ବିପତ୍ତିରେ ପଡ଼ିଛନ୍ତି ।" ତା'ପରେ ସେ ଚୁପ୍ ହୋଇଗଲା ।

ମନଦେଇ ଶୁଣୁଥିବା ଲୋକଙ୍କ ମଧ୍ୟରୁ କେତେକ ବଡ଼ ଆଗ୍ରହ ସହକାରେ ପଚାରିଲେ—"ବିପଦ ?"

ସେ ଆସ୍ତେ ଆସ୍ତେ କିନ୍ତୁ ବଡ଼ ଗମ୍ଭୀର ଭାବରେ କହିଲା—"ଭଗବାନ କରନ୍ତୁ, ଏପରି ବିପତ୍ତି ଶତ୍ରୁକୁ ନ ପଡ଼ୁ ।"

"କ'ଣ ବିପତ୍ତି ?" ଆଗ୍ରହୀ ଲୋକମାନେ ଚିତ୍କାର କରି ଉଠିଲେ ।

ସେ କହିଲା—"ସେଠାକାର ଗୋଟିଏ ଅଦ୍ଭୁତ ରାକ୍ଷସ ଆସି ପହଞ୍ଚି ଯାଇଛି । ଲୋକେ ତାକୁ ଦେଖିପାରୁ ନାହାନ୍ତି । କିନ୍ତୁ ସେ ବିପଦ ପରେ ବିପଦ ସୃଷ୍ଟି କରି ଚାଲିଛି । ଲୋକେ ଭୟରେ ଛୁନିଆ । ରାତି ତ ରାତି, ସନ୍ଧ୍ୟାବେଳକୁ ବି ଲୋକେ ତାଟି କବାଟ ପକାଇ ଦେଉଛନ୍ତି ।"

"କ'ଣ ସେ କରୁଛି ?" ସେଠାରେ ବସିଥିବା ଲୋକମାନେ ପଚାରିଲେ ।

ସେ ଲୋକଟି ଉତ୍ତର ଦେଲା—"ସେ ରାକ୍ଷସ ଅଦ୍ଭୁତ । କାହାର କେତେବେଳେ କାନ ନେଇଯାଉଛି ତ କାହାର ନାକ

ନେଇଯାଉଛି । ପୁଣି କାହାକୁ ବେଳେ ବେଳେ ଅନ୍ଧ କରିଦେଉଛି ।
ରାତି ହେଲେ ସେ ଆସୁଛି ସତ, କିନ୍ତୁ କୁଆଡୁ ଆଉ କିପରି ସେ ଆସୁଛି, କେହି ଜାଣିପାରୁ ନାହାନ୍ତି । ବିପତ୍ତିରେ ପଡ଼ିବା ଲୋକ ପାଟି କରିବା ପୂର୍ବରୁ ସେ ଚମ୍ପଟ । ତାର ଟେର ବି କେହି ପାଉ ନାହାନ୍ତି ।"

କେଉଁ କାଳରୁ ଗପ ପାଇଁ ଖାଦ୍ୟ ନ ଥିଲା । ଠିକଏ ମଉକା ମିଳିଯିବା ପରେ ଗାଁବାଲାଙ୍କର ଶୀତ ଛୁଟିଗଲା । କଥାଟା ପ୍ରଚାର କରିବାକୁ ସେମାନେ ଉଠିଲେ । ଗାଁ ଯାକ କଥାଟି ବ୍ୟାପି ଗଲା । ସମସ୍ତେ ଆଶ୍ୱସ୍ତ—ଯାହାହେଉ, ତାଙ୍କ ଗାଁରେ ରାକ୍ଷସର କୋପଦୃଷ୍ଟି ନାହିଁ । ସେମାନେ ରକ୍ଷା ପାଇଯାଇଛନ୍ତି ।

ଯେଉଁ ଗାଁରେ ଏକଥା ଆଲୋଚନା ହେଉଥିଲା, ସେ ଗାଁ ନାଁ ରତନପୁର । ତାର ଅଳ୍ପ ଦୂରରେ ଆଉ ଗୋଟିଏ ଗାଁ —ମାନସପୁର । ସେଠି ପଞ୍ଚେ ଲୋକ ବସି ଆରାମରେ ଗପ ଜମାଇ ଦେଇଥିଲେ । ସେଠି ଜଣେ କହିଲା—"ରତନପୁର ଖବର ଶୁଣିଛ ?" ଅନ୍ୟମାନେ ଉତ୍ସୁକ ନେତ୍ରରେ ତାକୁ ଚାହିଁ ପଚାରିଲେ "କ'ଣ ଖବର ?"

ଗପ ଆରମ୍ଭ କରିଥିବା ଲୋକ କହିଲା—"ସେଠି ଗୋଟିଏ ରାକ୍ଷସ ଆସି ପହଞ୍ଚି ଯାଇଛି । କାଲି ଗୋଟିଏ ଲୋକକୁ ଟାଣି ଟାଣି ନେଇଗଲା । ତା ଦେହରୁ ଅସମ୍ଭବ ରକ୍ତ ବୋହୁଥିଲା । ସେ ରକ୍ତ ଦାଗ ରାସ୍ତାଯାକ ପଡ଼ିଛି । ସେ ତ କାଲି ରାତିର କଥା । ଆଜି ଭୋରରୁ ସେ ବହୁତ ପିଲାଙ୍କୁ ତାଙ୍କ ମା' କୋଳରୁ ଛଡ଼ାଇ ନେଇ ପଳାଉଥିଲା । ମା'ମାନଙ୍କର ବିକଳ ଚିତ୍କାର ଶୁଣି ଲୋକମାନେ ତାକୁ ଗୋଡ଼ାଇଲେ । ଯେ ତାକୁ ଗୋଡ଼ାଇଲା, ତାକୁ ସେ ଅନ୍ଧ କରିଦେଲା ।"

ଲୋକମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ରାକ୍ଷସଟା ଦେଖିବାକୁ କପରି ?"

ଲୋକଟି କହିଲା—"ସେ ତ ଆହୁରି ଆଶ୍ଚର୍ଯ୍ୟ କଥା । ରାକ୍ଷସ ଏତେ କାଣ୍ଡ କରୁଛି, ଅଥଚ ତାକୁ କେହି ଦେଖିପାରୁ ନାହାନ୍ତି । ସେ ବ ଭାରି ଚାଲାକ । ଆଖି ପିଛୁଳାକେ ସେ ଏତେ କାଣ୍ଡ କରି ଦେଉଛି ଯେ, ହଠାତ୍ କ'ଣ ଘଟିଯାଉଛି କେହି ଜାଣି ପାରୁନାହାନ୍ତି ।"

ସେଦିନ ଉଦ୍ଧାମପୁରରେ ହାଟ । ବହୁଆଡୁ ଲୋକ ସେଠାକୁ ଆସି ଥାଆନ୍ତି । ଚା' ଦୋକାନରେ ଭାରି ଭିଡ଼ । ଲୋକେ ଚା' ପିଇଲାବେଳେ ନାନା କଥା ଚର୍ଚ୍ଚା କରୁଥାଆନ୍ତି । ଏତିକିବେଳେ ଜଣେ କହିଲା—"ହଇଏ, ଶୁଣିଲଣି । ରତନପୁର ଓ ମାନସପୁରରେ ଭୟଙ୍କର ବିପତ୍ତି ପଡ଼ିଛି ।"

ଲୋକମାନେ କୌତୁହଳୀ ହୋଇ ପଚାରିଲେ—"କ'ଣ ହୋଇଛି ?"

ସେଠାରେ ଗୋଟିଏ ଭୟଙ୍କର ରାକ୍ଷସ ଆସି ପହଞ୍ଚିଯାଇଛି । ବହୁତ ଲୋକଙ୍କୁ ସେ ଅନ୍ଧ କରିଦେଲଣି । କାହାର କାନ ନେଇ ଯାଇଛି ତ କାହାର ନାକ ନେଇଯାଇଛି । ଏବେ ସେଠି କୋଳୁଆ ଭୟ । ସନ୍ଧ୍ୟା ହେଲେ ଲୋକେ ଘରୁ ବାହାରିବାକୁ ଡରୁଛନ୍ତି ।

କାଲି କଥା ଶୁଣନ୍ତୁ । ମୋ ଦାଦା ରତନପୁରରେ ରହନ୍ତି । ହଠାତ୍ ରାତିରେ ତାଙ୍କ ନିଦ ଭାଙ୍ଗିଗଲା । ସେ ଦେଖିଲେ, ତାଙ୍କର କାନ କିଏ କାଟି ଠିକଠିକ କରିଦେଇଛି ।

ମାନସପୁରରେ ସ୍ତ୍ରୀଲୋକଟିଏ ପାଣି କାଢୁଥିଲା । ହଠାତ୍ ସେ ଦେଖିଲା, ତା'ର ଗୋଟିଏ ହାତ ନାହିଁ । ସେ ଚିତ୍କାର କଲା ।

ଲୋକେ ଧାଇଁ ଆସିଲେ । କିନ୍ତୁ ଅସୁରର ଠେର୍ କେହି ପାଇଲେ ନାହିଁ ।”

ଲୋକଙ୍କ ମଧ୍ୟରୁ କେତେକ କହିଲେ—“କି ଅସମ୍ଭବ କଥା । ଲୋକଟାର ହାତ କଟିଯିବ, ଅଥଚ କିଏ ଏହା କରୁଛି ସେ ଜାଣି ପାରିବ ନାହିଁ ।”

ଯେଉଁ ଲୋକଟି ଗପୁଥିଲା, ସେ ସବ୍-ଜାନତା ଭଳି କହିଲା —“ଆରେ ସେଇ ତ ଆଶ୍ଚର୍ଯ୍ୟ କଥା । ଅସୁର ଏମିତି କରୁଛି, ଅଥଚ କେହି ତାକୁ ଦେଖିପାରୁ ନାହାନ୍ତି । ଉତ୍ପାତ ହେବାଟା ଲୋକେ ଦେଖୁଛନ୍ତି ଆଉ ଅଙ୍ଗେ ଲିଭାଉଛନ୍ତି । ଏକଥା ଯଦି ଅବିଶ୍ୱାସ ହେଉଛି, ଯେଉଁ ଗାଁରେ ଅସୁର ଉତ୍ପାତ କରୁଛି ସେ ଗାଁକୁ ଯାଅ । କ’ଣ ଘଟୁଛି, ନିଜ ଆଖିରେ ଦେଖ । ତାହାହେଲେ ଯାଇ କଥାଟାକୁ ବିଶ୍ୱାସ କରିବ ।”

ସନ୍ଧ୍ୟା ଆସିଗଲା । ଦୋକାନରୁ ଗହଳି କମିଗଲା । ଲୋକମାନେ ଯେ ଯାହାର ରାସ୍ତା ଧରିଲେ ।

ସେତେବେଳକୁ ରାତି ଅଧ । ହଠାତ୍ ଉଦାମପୁର ବଜାରର ଗୋଟିଏ ଘରୁ ଏକ କରୁଣ ଚିତ୍କାର ଶୁଣାଗଲା । ସେ ଚିତ୍କାର ଶୁଣି କେତେକଲୋକ ନିଦରୁ ଉଠି ପାଟିକଲେ—“ରାକ୍ଷସ, ରାକ୍ଷସ । ହେଇ ରାକ୍ଷସ ।” ପଚିଶ ସାହସୀ ଲୋକ ଘରୁ ପଦାକୁ ଆସି କେଉଁଠୁ କରୁଣ ଚିତ୍କାର ଭାସି ଆସୁଥିଲା, ସେଠାକୁ ଗଲେ । ସେମାନେ ଦେଖିଲେ, ଗୋଟିଏ ସ୍ତ୍ରୀଲୋକ ତା କାନକୁ ଧରିଛି । ଏଣେ ଭଦ୍ରେ ଖନେଇ ଖନେଇ କହୁଥାଏ—“ଅସୁର ମୋର କାନ ଛଣ୍ଡିଆ କରି ଦେଲା ।”

ଲୋକମାନେ ତାକୁ ସାନ୍ତ୍ୱନା ଦେଉଥାଆନ୍ତି । ଆସ୍ତେ ଆସ୍ତେ ସେ ପ୍ରକୃତିସ୍ଥ ହୋଇ ଆସୁଥାଏ । ଅସୁର କାନ କାଟି ନେଉଥିବା ଖବର ବିଜୁଳି ବେଗରେ ଚାରିଆଡ଼େ ଖେଳିଗଲା । ଖବର ପାଇ

ପୋଲିସ ଅଫିସର ଜଣେ ସେଠାକୁ ଆସିଲେ । ତାଙ୍କୁ ଦେଖି ଲୋକମାନେ ପାଖେଇ ଗଲେ । ସେ ଧିରେ ଧିରେ ଅତି ଭଦ୍ର ଭାବରେ ସ୍ତ୍ରୀ ଲୋକକୁ ପଚାରିଲେ—"କ'ଣ ଘଟିଲା; ମୋତେ ଠିକ୍ ଭାବରେ କହିପାରିବ କି ?"

ସ୍ତ୍ରୀ ଲୋକଟି କହିଲା—"ମୁଁ ନିଦରେ ଶୋଇଥିଲି । କିଏ ନେଉଟାଇଲା ବେଳେ ମୁଁ ଅନୁଭବ କଲି ଯେ ମୋ କାନ କିଏ ଟାଣି ନେଉଛି । ମୁଁ ମୁଣ୍ଡ ଏପଟ ସେପଟ କଲି । ବହୁତ କଷ୍ଟରେ ମୁଣ୍ଡ ଉଠାଇଲି । ଦେଖିଲି, ମୋ ଡାହାଣ କାନରେ କାନଫୁଲ ନାହିଁ । କାନରୁ ସେଥିରୁ ରକ୍ତ ବୋହୁଛି । ଘରର କବାଟ ଭିତରୁ ବନ୍ଦ ଥିଲା । ମୁଁ ଭୟରେ ପାଟିକଲି ।"

ପୋଲିସ ଅଫିସର କହିଲେ—"ତୁମେ କେଉଁଠି ଶୋଇଥିଲ, ଚାଲ ସେ ଜାଗାକୁ ଯାଇ ଠିକଏ ଦେଖିବା । ସ୍ତ୍ରୀଲୋକଟି ତାଙ୍କୁ ସେ ଶୋଇଥିବା ବିଛଣା ପାଖକୁ ନେଇଗଲା । ସେ ବିଛଣା ସେଠି ସେମିତି ପଡ଼ିଥିଲା । ପୋଲିସବାବୁ ଟି ବିଛଣାକୁ ତନ୍ନ ତନ୍ନ କରି ପରୀକ୍ଷା କଲେ । ବିଛଣା ଚଦର ଦେହରେ କାନଫୁଲଟି ଲାଗିଥିବାର ଦେଖିଲେ । ତାକୁ ଉଠାଇ ଆଣି ସ୍ତ୍ରୀଲୋକଟିକୁ ସେଇଟି ଦେଇ କହିଲେ—"ଏ ଅସୁରର କାଣ୍ଡ ନୁହଁ । ତମର ବିଛଣା ଚଦର ସୂତାରେ କାନଫୁଲ ଲାଗି ଯାଇଥିଲା । ସେଥିପାଇଁ ସେମିତି ଜଣାଗଲା ।"

ଲୋକେ ତଥାପି ପୋଲିସ ଅଫିସରଙ୍କ କଥାକୁ ବିଶ୍ୱାସ କଲେ ନାହିଁ । ବରଂ କହିଲେ—"ଅସୁର ଆସି କାନଫୁଲ ଟାଣୁଥିଲା । ସ୍ତ୍ରୀଲୋକଟି ଉଠି ପଡ଼ିବାରୁ ପଳାଇଲା ।"

ଗାଁର ପୁରୋହିତ କହିଲେ—"ଠାକୁରଙ୍କ ପାଖରେ ହୋମ କର, ଯୋଗଯାଗ କର । ଅସୁର ଆଉ ଆସିବ ନାହିଁ ।"

ଫକୀରମାନେ ମସ୍‌ଜିଦରେ ଓ ପାଦ୍ରୀମାନେ ଗୀର୍ଜାରେ ଉପାସନା କରିବାକୁ ଉପଦେଶ ଦେଲେ ।

ମନ୍ଦିର, ମସ୍‌ଜିଦ ଓ ଗୀର୍ଜାରେ ପ୍ରାର୍ଥନା ଚାଲିଲା । ତାପରେ ଅସୁର କଥା କେହି ଆଉ ଶୁଣିବାକୁ ପାଇଲେ ନାହିଁ ।



## ମୁକ୍ତି

ଶିବଶଙ୍କର । କାଶ୍ମୀରର ଜଣେ ବଡ଼ ଚାଷୀ । ତାର ଜମିବାଡ଼ି ବହୁତ । ବାର ବଗିଚା ବି ଅଛି । ସେ ଆରାମରେ ତାର ସଂସାର ଚଳାଉଥାଏ ।

ସେ ବର୍ଷ କାଶ୍ମୀରରେ ବର୍ଷା ଟୋପାଏ ବି ହେଲା ନାହିଁ । ପାଣି ଅଭାବରେ ଜମି ସବୁ ଫାଟି ଆଁ କଲା । ଧାନଗଛ ଅବସ୍ଥା କଥା ଛାଡ଼ । ସେସବୁ ଠିଆରେ ଠିଆରେ ଶୁଖିଗଲା । ଗଛରେ ଫଳଟିଏ ରହିଲା ନାହିଁ । ସବୁ ଉସୁମୁରିଆ ହୋଇ ଝଡ଼ିପଡ଼ିଲା ।

ଶସ୍ୟ ନ ହେଲେ, ଯାହା ହୁଏ ତାହାହିଁ ହେଲା । ଲୋକେ ଖାଇବାକୁ ପାଇଲେ ନାହିଁ । ଚାରିଆଡ଼େ ହାହାକାର । ଅନାହାର । ଯାହାର ଯାହା ସଞ୍ଚିତ ସମ୍ପତ୍ତି ଥିଲା, ତାକୁ ସେ ବିକି ଭାଙ୍ଗି ଥୋଡ଼େ ଦିନ ଚଳିଲା । ସେତକ ସରିଯିବାରୁ ଭିକ ମାଗିବାକୁ ବାଣ୍ଟକୁ ବାହାରି ପଡ଼ିଲା । ରାସ୍ତାଘାଟରେ ଭିକାରୀଙ୍କର ଭିଡ଼ ।

ଉପାସ ସହି ନ ପାରି ଅନେକ ଟଳି ପଡ଼ିଲେ । ତାକୁ ମଧ୍ୟ ଉଠାଇବାକୁ କାହାର ଆଗ୍ରହ ନାହିଁ । ରାସ୍ତାଘାଟରେ ଶବ ପଡ଼ି ରହିଛି । ଏବେ ସବୁଠି ଶାଗୁଣାମାନଙ୍କର ଗହଳି । ସବୁଠାରେ ତାଙ୍କ ଖାଦ୍ୟ । ସେମାନେ ମେଳବାନ୍ଧି ବସୁଛନ୍ତି । ଭୂସ୍ୱର୍ଗ କାଶ୍ମୀର ଏବେ

ଶ୍ରୀସ୍ଥାନ । ସ୍ଥୁରଖାର ।

ଶିବଶଙ୍କର ଘରେ ଆଉ କିଛି ଖାଇବାକୁ ନାହିଁ । ସେ ପୁଣି ଥରେ କାଠ କୋଠିକୁ ଅନାଇଲା । ଯେଉଁ କୋଠି ସବୁବେଳେ ଭରପୂର ଥିଲା, ସେ ଏବେ ସମ୍ପୂର୍ଣ୍ଣ ଖାଲି । ଯେଉଁ ଘରୁ ଦୁଃଖୀ ରଙ୍କି ଭିକାରି କେବେହେଲେ ଫେରୁ ନଥିଲେ, ଏବେ ସେ ଘର ଲୋକେ ଉପାସ । ଏସବୁ କଥା ଭାବି ସେ ଏକ ଦୀର୍ଘ ନିଃଶ୍ୱାସ ପକାଇଲା । ଆପେ ଆପେ ତା' ଆଖିରୁ ଦୁଇଧାର ଲୁହ ତାର ହାଡୁଆ ଗାଲ ଦେଇ ବୋହି ଆସିଲା ।

ଗୋଟିଏ ବ୍ୟାଗ ଧରି ସେ ଘରୁ ବାହାରି ଆସିଲା । ଘରେ ସମସ୍ତେ ଖାଡ଼ା ଖାଡ଼ା ଉପାସ । କେଉଁଠୁ କିଛି ଆଣିଲେ, ସେମାନେ ତୁଣ୍ଡରେ ଦେବେ ଏହାହିଁ ଶିବଶଙ୍କରର ଏକମାତ୍ର ଚିନ୍ତା ।

ମନେ ମନେ ସେ ବହୁତ ଲୋକଙ୍କ କଥା ଭାବିଲା । ସେମାନେ ଏକଦା ତା'ପରି ଧନୀଥିଲେ । ବର୍ତ୍ତମାନ ତାରି ଭଳି ସେମାନେ ନିଃସ୍ୱ । ତେଣୁ ସେମାନଙ୍କ ପାଖକୁ ଏ ଦୁର୍ଦ୍ଦିନରେ ଯାଇ ଲାଭନାହିଁ । କାହା ପାଖକୁ ଯିବ, ସେ ସ୍ଥିର କରିପାରିଲା ନାହିଁ । ସେ କିନ୍ତୁ ଠିଆ ନହୋଇ ଆଗକୁ ଚାଲିବାକୁ ଲାଗିଲା ।

କେତେ ବାଟ ଆସିଲାଣି, ତାର ଖିଆଲ ନାହିଁ । ସେ କେଉଁଠି ପହଞ୍ଚିଲାଣି, ସେ ବି ଜାଣେ ନାହିଁ । ହଠାତ୍ ସେ ଅଟକି ଗଲା । ଆଗରେ ଜଣେ ବୃଦ୍ଧ । ଜଟା ଦାଢ଼ି ସବୁ ପାଚିଯାଇଛି । ସେ ଯେ ଜଣେ ଋଷି, ଏଥିରେ ତାର ସନ୍ଦେହ ନାହିଁ । ସେ ଲମ୍ବହୋଇ ତାଙ୍କ ଗୋଡ଼ତଳେ ପଡ଼ିଗଲା ।

ଲୋକଟି ଯେ ଦୁର୍ଭିକ୍ଷ ପ୍ରପିଡ଼ୀତ ଏ ବିଷୟରେ ଋଷି ନିଃସନ୍ଦେହ । ତାକୁ ଦେଖି ଋଷିଙ୍କର ଦୟାହେଲା । ସେ ଧୀର ଗମ୍ଭୀର ସ୍ୱରରେ ପଚାରିଲେ—"ପୁଅରେ, ମୁଁ ତୋ ପାଇଁ କ'ଣ

କରିପାରେ ?”

ଋଷିଙ୍କର ଏଇକଥା କେଇପଦ ଶିବଶଙ୍କର ପ୍ରାଣରେ ଆଶାର ସଞ୍ଚାର କଲା । ସେ ଏକା ନିଶ୍ୱାସକେ ତାର ଦୁଃଖ ଗୋଟି ଗୋଟି କରି କହିଗଲା । ତାପରେ କାକୁତି ମିନତି ହୋଇ ପ୍ରାର୍ଥନା କଲା— “ମୋର ଦୁଃଖ ତ ଶୁଣିଲେ । ମୋ ପିଲାମାନଙ୍କୁ ବଞ୍ଚାଇବା ପାଇଁ ମୋତେ କିଛି ସାହାଯ୍ୟ କରନ୍ତୁ ।”

ଋଷି ଅନାସକ୍ତ ଭାବରେ କହିଲେ— “ବାପା, ଟିକିଏ ଆଗକୁ ଗଲେ ମୋର ଆଶ୍ରମ । ସେଠି ମୋ ଝିଅ ଅଛି । ତା’ ପାଖକୁ ଯା । ତାକୁ ତୋର ଦୁଃଖ କହ । ସେ ଶୁଣିଲେ, ତୋର ସବୁ ସମସ୍ୟାର ସମାଧାନ କରିପାରିବ ।”

ଶିବଶଙ୍କର ଏଥର ଖୁବ୍ ଆଶାୟୀ । ଦ୍ରୁତ ଗତିରେ ସେ ଜଙ୍ଗଲ ଆଡ଼କୁ ଚାଲିଲା । ସେଠି ଋଷି ଆଶ୍ରମରେ ପହଞ୍ଚି ତାଙ୍କ ଝିଅକୁ ଭେଟିଲା । ତାଙ୍କୁ ତାର ଦୁଃଖ ସବୁ କହିଲା । ତା’ ଦୁଃଖ ଶୁଣି ଋଷିଝିଅ କାନ୍ଦିବାକୁ ଲାଗିଲେ । ଝିଅଟି ଆଖିରୁ ବଡ଼ ବଡ଼ ଟୋପା ଲୁହ ଝରିପଡ଼ିଲା । ତା’ କାନ୍ଦ ଦେଖି ଶିବଶଙ୍କର ବ୍ୟତିବ୍ୟସ୍ତ ହୋଇ ଉଠିଲା । କିନ୍ତୁ ଯାହା ଦେଖିଲା, ସେଥିରେ ତାର ଆଖି ଖୋସି ହୋଇଗଲା । ଝିଅର ଲୁହଟୋପା ତଳେ ପଡ଼ିଲା ମାତ୍ରେ ମୁକ୍ତା ହୋଇଯାଉଛି । ଯେତେବେଳେ କିଛି ମୁକ୍ତା ହୋଇଗଲା, ଝିଅଟି ତା’ର କାନ୍ଦ ବନ୍ଦ କରିଦେଲା । ସେତକ ଶିବଶଙ୍କରକୁ ଦେଇ କହିଲା—“ଏତକ ନେଇଯାଅ । ଏହାକୁ ବିକି ତମ ସଂସାର ଚଳାଅ । ପୁଣି ଦରକାର ହେଲେ ଆସିବ ।”

ଝିଅକୁ ସେ କପରି ତା’ର କୃତଜ୍ଞତା ଜଣାଇବ, ସେ ଭାଷା ଶିବଶଙ୍କର ପାଖରେ ନଥିଲା । ସେ ମୁଣ୍ଡି ଆଟିଏ ମାରି ମୁକ୍ତାଗୁଡ଼ିକ ଧରି ସେଠୁ ବାହାରି ପଡ଼ିଲା । ମୁକ୍ତାତକ ବିକିଲେ କିଛି ସଉଦା

ନେବ, ସେଇଆ ତା'ର ଲକ୍ଷ୍ୟ । ତେଣୁ ସେ ସିଧା ତା' ଗାଁପାଖ ବଜାରକୁ ଗଲା । ସେଠି ଆଗରୁ ସେ ତ ଜଣେ ଜଣାଶୁଣା ଲୋକ ଥିଲା । ସେ ଯେମିତି ଜଣେ ଦୋକାନୀକୁ ମୁକ୍ତା ବିକିବାକୁ ଦେଖାଇଛି, ସେ ମୁକ୍ତା କିଣିଲା ନାହିଁ । ବରଂ ଶିବଶଙ୍କରକୁ ସନ୍ଦେହ କଲା । ସେ ଯାହା ଦୋକାନକୁ ଗଲା, ସେଇକଥା । ସମସ୍ତଙ୍କର ଗୋଟିଏ ପ୍ରଶ୍ନ—"କାଲି ତୋ ଘରେ କିଛି ନ ଥିଲା । ଯାହାଠାରୁ ତାଠାରୁ ଧାର ମାଗି ପିଲାଙ୍କୁ ଚଳାଉଥିଲୁ । ଆଜି ଏତେ ମୁକ୍ତା କେଉଁଠୁ ପାଇଲୁ ?" ଶିବଶଙ୍କର ସବୁ କଥା କହିଲା । ଯଦିଓ ତାହା ସତ୍ୟ, ତାହା ସମସ୍ତଙ୍କୁ ଉପାଖ୍ୟାନ ଗପ ଭଳି ଲାଗିଲା । କେହି ଶିବଶଙ୍କରକୁ ବିଶ୍ୱାସ କଲେ ନାହିଁ । ବରଂ ଭାବିଲେ, କେଉଁଠୁ ସେ ଚୋରି କରିଛି । ପଚାରିବାରୁ ମନଗଢ଼ା ଅଜବ କଥା କହୁଛି । ସମସ୍ତେ ମିଶି ଶିବଶଙ୍କରକୁ ମୁକ୍ତାସହ କଚେରୀ ଆଳ ହାତରେ ରାଜାଙ୍କ ପାଖକୁ ପଠାଇ ଦେଲେ ।

ତତ୍କାଳୀନ କାଶ୍ମୀର ରାଜା ନ୍ୟାୟବନ୍ତ ଥିଲେ । ତରବରିଆ ନିଷ୍ପତ୍ତି ନେବା ତାଙ୍କର ଅଭ୍ୟାସ ନୁହେଁ । ତା'ଛଡ଼ା ଦୋଷୀର କୈଫିୟତକୁ ସେ ମନଧ୍ୟାନ ଦେଇ ଶୁଣନ୍ତି । ଶିବଶଙ୍କର ରାଜାଙ୍କ ଆଗରେ ସବୁକଥା କହିଲା । ରାଜା ଦେଖିଲେ—ଶିବଶଙ୍କର ଜଣେ ଚାଷୀ, ନିରୀହ ଓ ସରଳ । ତାକୁ ସହଜରେ ଅବିଶ୍ୱାସ କରିହେବ ନାହିଁ । ରାଜା କହିଲେ—"ତୁମେ ଯାହା କହୁଛ ତାକୁ ମୁଁ ଅବିଶ୍ୱାସ କରି ଉଡ଼ାଇ ଦେଉନାହିଁ । ବରଂ ତୁମେ ମୋତେ ଋଷିଙ୍କ ନିଅ ପାଖକୁ ନେଇ ଚାଲ । ପ୍ରକୃତରେ ତାର ଲୁହ ଯଦି ମୁକ୍ତା ହେଉଥାଏ, ତୁମେ ଖାଲି ମୁକ୍ତ ହେବ ନାହିଁ । ଏ ମୁକ୍ତାତକ ତୁମର ବି ହେବ ।"

ଶିବଶଙ୍କର ରାଜାଙ୍କୁ ଋଷିଙ୍କ ଆଶ୍ରମକୁ ନେଇଗଲା । କିନ୍ତୁ ସବୁ

କଥା ଶୁଣିବା ପରେ ଋଷିକନ୍ୟା ରାଜାଙ୍କୁ ଦେଖା କରିବାକୁ ଅମଙ୍ଗ ହେଲା । ତା' ବଦଳରେ କାନ୍ଦିଲା । ତା' ଲୁହ ପଡ଼ ଯାହା ମୁକ୍ତା ହେଲା, ତାହା ସେ ରାଜାଙ୍କ ପାଖକୁ ପଠାଇ ଦେଲା । ସେସବୁ ମୁକ୍ତା ଦେଖି ରାଜା ଶିବଶଙ୍କରକୁ ବିଶ୍ୱାସ କଲେ । ତାକୁ ମୁକ୍ତ କରିଦେଲେ । ଜବତ ହୋଇଥିବା ମୁକ୍ତା ତାର ତାକୁ ଫେରାଇ ଦେବାକୁ ଆଦେଶ ଦେଲେ ।

ଋଷିକନ୍ୟାର ଅଦ୍ଭୁତ ଗୁଣ ଦେଖି ତାକୁ ରାଣୀ କରିବାକୁ ରାଜା ଚାହିଁଲେ । ସେ ଋଷିଙ୍କୁ ଏ ପ୍ରସ୍ତାବ ଦେଲେ । ଋଷିଙ୍କର ଆପତ୍ତି କରିବାର କିଛି ନଥିଲା । ସେଇଦିନ ଋଷି ତାଙ୍କର ଆଶ୍ରମରେ ରାଜାଙ୍କ ସହିତ ଝିଅକୁ ବିବାହ କରିଦେଲେ । ସାଙ୍ଗେ ସାଙ୍ଗେ ରାଜାଙ୍କ ସହିତ ଝିଅକୁ ବିଦା କରିଦେଲେ । ସେମାନେ ରାଜଧାନୀକୁ ବାହାରିଲେ ।

ରାଜା ଋଷି ଆଶ୍ରମକୁ ଗଲାବେଳେ ତାଙ୍କର ଦେହରକ୍ଷୀ ଓ କେତେକ ସୈନ୍ୟଙ୍କୁ ସାଥିରେ ନେଇ ଯାଇଥିଲେ । ତାଙ୍କର ଗହଣରେ ରାଜା ଫେରିଲେ । ବାଟରେ ଝେଲମ ନଦୀ କୂଳରେ ସନ୍ଧ୍ୟା ହେଲା । ସେଇଠି ଡେରା ପକାଇବାକୁ ରାଜା ଆଦେଶ ଦେଲେ ।

ଆଶ୍ରମରେ ଋଷି କନ୍ୟାର ଗୋଟିଏ ସହଚରୀ ଥିଲା । ଋଷିକନ୍ୟା ସହ ସହଚରୀଟିକୁ ଋଷି ରାଜଧାନୀକୁ ପଠାଇ ଦେଲେ । ସେ ବି ଋଷିକନ୍ୟା ସହ ସବାରିରେ ବସିକରି ଆସୁଥିଲା । ଏକଥା ରାଜା କି ସୈନ୍ୟମାନେ ଜାଣି ନଥିଲେ ।

ସେତେବେଳକୁ ଅଧ ରାତି । ଋଷିକନ୍ୟାକୁ ନିଘୋଡ଼ ନିଦ । ଦାସୀଟି ଆଖିରେ ନିଦ ନାହିଁ । ସେ ଜାଣେ, ଋଷିକନ୍ୟାକୁ ରାଜା ଏପର୍ଯ୍ୟନ୍ତ ଦେଖି ନାହାନ୍ତି । ସେ ବି ଆସିବା କଥା କାହାକୁ ଜଣା ନାହିଁ । ସେ ଯଦି ଏ ପରିସ୍ଥିତିର ସୁବିଧା ନେବ, ସେ ପାଟରାଣୀ

ହୋଇ ରହିଯିବ । ଲୋଭ ବଢ଼ିଲେ, ମଣିଷ ମାତ୍ର ଅନର୍ଥ କରୁ ବିଚାର କରେ ନାହିଁ । ସବତଣୀଟି ହଠାତ୍ ଉଠିପଡ଼ି ଋଷିକନ୍ୟାର ଗୋଡ଼ ହାତ ବାନ୍ଧ ଦେଲା । ତା'ପରେ ପାଟିରେ ତାର ଲୁଗା ମାଡ଼ି ଦେଲା । ଋଷି କନ୍ୟାର ନିଦ ଭାଙ୍ଗିବା ବେଳକୁ ସେ ତାର ଅକ୍ତିଆରରେ ବାହାରେ । ସେ ଯେତେ ଚେଷ୍ଟା କଲେବି ମୁକ୍ତହୋଇ ପାରିଲା ନାହିଁ କି ପାଟି କରିପାରିଲା ନାହିଁ । ତାପରେ ତାର ସେ ସବତଣୀ ଋଷି କନ୍ୟାର ଆଖି ଦୁଇଟି ଫୁଟାଇ ଦେଲା ।

ଋଷି ଝିଅକୁ ବିଦାୟ ଦେଲା ବେଳେ ଝିଅର ଲୁଗାପଟା ଓ ଅନ୍ୟାନ୍ୟ ଜିନିଷ ଗୋଟିଏ ବିରାଟ କାଠ ବାକ୍ସରେ ପୁରାଇ ଦେଇଥିଲେ । ରାଜାଙ୍କ ଆଦେଶରେ ସେଇ ବାକ୍ସ ଋଷି କନ୍ୟାଙ୍କ ତମ୍ବୁରେ ରଖା ହୋଇଥିଲା । ସବତଣୀଟି ଋଷି କନ୍ୟାକୁ ତାର ଲୁଗା ପିନ୍ଧାଇ ଦେଲା । କାଠ ବାକ୍ସ ତାଲା ଭାଙ୍ଗି ସବୁ ଜିନିଷ ବାହାର କରି ଦେଇ ଋଷି କନ୍ୟାକୁ ଘୋଷାଡ଼ି ଘୋଷାଡ଼ି ନେଇ ସେ ବାକ୍ସରେ ପୁରାଇ ଦେଲା । ସେଥିରେ ପୁଣି ତାଲା ପକାଇ ଦେଲା । ନିଜେ ଋଷି କନ୍ୟାର ଲୁଗା ଓ ଅଳଙ୍କାର ପିନ୍ଧି ନେଲା । ତା'ପରେ ବାହାରକୁ ଆସି ସେଇ ବାକ୍ସଟିକୁ ଝେଲମ ନଦୀରେ ପକାଇ ଦେବାକୁ ଆଦେଶ ଦେଲା । ନୂଆ ରାଣୀଙ୍କର ଆଦେଶ । ପ୍ରତିବାଦ କରିବାର ସାହସ କାହାର ଅଛି ? ଆଦେଶ ପାଳନ ହେଲା ।

କାଠ ବାକ୍ସଟି ଖୁବ୍ ବଡ଼ । ନିଖୁଣ ହୋଇ ତିଆରି ହୋଇଥିଲା । ପାଣିରେ ପକାଇ ଦେଲେ ବି ସେଥିରେ ପାଣି ପଶିଲା ନାହିଁ । ତେଣୁ ତାହା ନ ବୁଡ଼ି ଭାସି ଭାସି ଚାଲିଗଲା ।

ଜଣେ କାଠୁରିଆ କାଠ ହାଣି ହାଣି କ୍ଲାନ୍ତ ହୋଇଗଲା । ପାଣି ପିଇବାକୁ ସେ ଝେଲମ ନଦୀ କୂଳକୁ ଯାଇଥିଲା । ନଦୀରେ

କାଠ ବାକ୍ସଟିଏ ଭାସି ଭାସି ଆସୁଥିବାର ଦେଖି ତାର କୌତୁହଳ ହେଲା । ସେ ନଈ ମଝିକୁ ଯାଇ ବାକ୍ସଟିକୁ କୂଳକୁ ଟାଣିଆଣିଲା । ବାକ୍ସ ଖୋଲି ଦେଖେତ—ତା' ଭିତରେ ଗୋଟିଏ ସୁନ୍ଦରୀ ଝିଅ । କିନ୍ତୁ ସେ ଜ୍ଞାନଶୂନ୍ୟ । ତା'ନାକ ପାଖରେ କାଠୁରିଆଟି ହାତଦେଲା । ଦେଖିଲା—ନିଃଶ୍ୱାସ ପ୍ରଶ୍ୱାସ ଠିକ୍ ଭାବରେ ଚାଲିଛି । ତାକୁ କାନ୍ଧରେ ପକାଇ ସେ ତାର କୁଡ଼ିଆକୁ ନେଇଗଲା । ସେଠାରେ ଯତ୍ନ ନେବା ପରେ ଝିଅଟିର ଚେତା ଆସିଲା । ସେତେବେଳେ କାଠୁରିଆ ଯାଇ ଜାଣିଲା ଯେ ଝିଅଟିର ଆଖି ଦୁଇଟା ଫୁଟାଇ ଦିଆଯାଇଛି ।

କାଠୁରିଆଟି ବୃଦ୍ଧ । ବହୁଦିନ ହେଲା ସ୍ତ୍ରୀ ତାର ମୃତ । ସେ ବି ନିଃସନ୍ତାନ । ଏକାକୀ ରହି ରହି ତାକୁ ବିରକ୍ତ ଲାଗେ ।

ଝିଅଟିକୁ ପାଇଲାବେଳକୁ କାଠୁରିଆର ମନରେ ପରିବର୍ତ୍ତନ ଆସିଛି । ସେ ଭାବୁଛି—ଝିଅଟିର ବୟସ କମ୍ । ନିଶ୍ଚୟ କେହି ଶତ୍ରୁ ତାର ଆଖି ଫୁଟାଇ କାଠ ବାକ୍ସରେ ଭସାଇ ଦେଇଛି । ଝିଅଟିକୁ ତା' ଘରେ ପହଞ୍ଚାଇଲେ ବି ତା ଜୀବନ ନିରାପଦ ନୁହେଁ । ସେ ତ ଜଙ୍ଗଲରେ ରହୁଛି । ଏଠାକୁ କେହି ବି ଆସନ୍ତି ନାହିଁ । ଝିଅଟିକୁ ସେ ଝିଅ କରି ରଖିବ । ଅନ୍ତତଃ ତା' ଜୀବନରେ ଟିକିଏ ଶାନ୍ତି ଆଉ ସୁଖ ମିଳିବ । ତାପରେ ସେ ଝିଅକୁ କହିଲା—"ମା, ମୋର ତ କେହି ନାହାନ୍ତି । ତୁ ଆଜିଠାରୁ ମୋର ଝିଅ ।"

ଏକଥା ଶୁଣି ଋଷି କନ୍ୟା କାନ୍ଦି ପକାଇଲା । ସେ କହିଲା— "ମୋର ଏହା ଭାଗ୍ୟ । ଏଣେ ତା' ଆଖିରୁ ପଡ଼ୁଥିବା ଲୁହ ତଳେ ପଡ଼ି ମୁକ୍ତା ପାଲଟିଗଲା । ଋଷି କନ୍ୟା ତାକୁ ସାଉଣ୍ଟି ଆଣି କହିଲା —"ବାପା, ତମର ଅବସ୍ଥା କ'ଣ ମୁଁ ଜାଣେ ନାହିଁ । ଏହି ମୁକ୍ତାତକ ନିଅ । ବିକ୍ରି କରି ଯାହା ଦରକାର ହେଉଛି, ସେଥିରେ ଲଗାଇ ଦିଅ ।"

କାଠୁରିଆ ମୁକ୍ତାତକ ବିକି କରି ପଉଦା ଆଣିଲା । ସେଇଦିନୁ କାଠୁରିଆ କାଠ ହାଣି ଯାଏନାହିଁ । ମୁକ୍ତା ବିକି କରି ଉଭୟେ ଚଳନ୍ତି । ଝିଅଟି ବେଶ୍ ଚାଲାକ । କଥାରେ କଥାରେ କାଠୁରିଆଟିର ପରିଚୟ ଓ ଅବସ୍ଥା ବିଷୟରେ ସବୁ ଜାଣିନେଲା । କିନ୍ତୁ କାଠୁରିଆ ଯେତେ ପ୍ରକାରରେ ପଚାରିଲା—ସେ କିଏ ତା' ସେ ଜଣାଇ ଦେଲା ନାହିଁ ।

କାଠୁରିଆର ଏବେ ପଇସାର ଅଭାବ ନାହିଁ । ସେ ଜଙ୍ଗଲ ଛାଡ଼ି ସହରକୁ ଗଲା । ସେଠାରେ ଏକ ବିରାଟ ଅଟ୍ଟାଳିକା କଲା । କୌଣସି ରାଜପ୍ରାସାଦ ତାକୁ ବି ଲକ୍ଷ୍ୟ ହେବ ନାହିଁ । ସେ ଅଟ୍ଟାଳିକା ଚାରିପଟେ ସୁନ୍ଦର ଫୁଲ ଓ ଫଳ ବଗିଚା କଲା । ଘରେ ବହୁତ ଚାକର ଚାକରାଣୀ ରଖିଲା ।

ଆଗ କାଠୁରିଆ ହୋଇ ସେ ଆଉ ନାହିଁ । ଚେହେରାରେ ତାର ବହୁ ପରିବର୍ତ୍ତନ ହୋଇଛି । ସେ ସବୁବେଳେ ସିଲ୍‌କର ଲମ୍ବା କୋଟ୍ ଓ ପାଇଜାମା ପିନ୍ଧେ । ଝିଅଟିର ତତ୍ତ୍ୱ ନେବାରେ ସେ ସବୁ ସମୟ ତାର କଟାଇ ଦିଏ ।

ଖାଇ ପିଇ ଆରାମରେ ରହୁଥିବାରୁ ଝିଅଟି ପୂର୍ବ ଅପେକ୍ଷା ଆହୁରି ସୁନ୍ଦର ଦେଖା ଗଲାଣି । କିନ୍ତୁ ମନରେ ତାର ଶାନ୍ତି ନ ଥାଏ । ପୂର୍ବ କଥା ମନରେ ପଡ଼ିଲେ, ତାର ଦୁଃଖ ହୁଏ । ସେଥିପାଇଁ କିଛି କାରଣ ନଥିଲେ ବି ସେ ବିରକ୍ତ ହୁଏ । କାଠୁରିଆ ଏସବୁ ଲକ୍ଷ୍ୟ କରେ । ବେଳେ ବେଳେ କହେ—"ମାଲେ, ମୁଁ ତୋ ବାପା, ତୁ ମୋ ଝିଅ । ଆମର ସମ୍ପର୍କ ଅତି ନିବିଡ଼ । ତୋ ପାଇଁ ମୋର ଜୀବନ ଅଛି । କିନ୍ତୁ ତୁ କିଏ, ତୋର ଆଉ କିଏ ଅଛନ୍ତି, ସେକଥା ମୁଁ ଜାଣିପାରିଲି ନାହିଁ । ଆମର କିଛି ଅଭାବ ନାହିଁ । ମୁଁ ଚାହେଁ ତୁ ସଂସାର କରି ସୁଖରେ ରହ । କିନ୍ତୁ ତୋ

ବିବାହ କଥା ଉଠିଲେ, ତୁ ରାଗୁଛୁ । କେଉଁଦିନ ମୁଁ ଆଖି ବୁଜି ଦେବି, ମୁଁ ବି ଜାଣେ ନାହିଁ । ଏପରି ଅବସ୍ଥାରେ ତୋତେ ଛାଡ଼ି ଦେଇ ଗଲେ ମୋର ଆତ୍ମା ଶାନ୍ତି ପାଇବ ନାହିଁ । ତୋର କ'ଣ ଇଚ୍ଛା ମୋତେ ଖୋଲି କହ । ଯଦି ଦରକାର ପଡ଼େ, ମୁଁ ତୋ ପାଇଁ ପ୍ରାଣ ଦେବାକୁ ଟିକିଏ ବି କୁଣ୍ଠାବୋଧ କରିବି ନାହିଁ ।"

ଏକଥା ଶୁଣି ଝିଅଟିର ମୁହଁ ଉଜ୍ଜ୍ୱଳ ଉଠିଲା । ସେ କହିଲା —"ବାପା, ତୁମେ ମୋ ଜୀବନ ରଖିଛ । ତୁମ ଋଣ ମୁଁ ଏ ଜୀବନରେ କେବେହେଲେ ସୁଝି ପାରିବି ନାହିଁ । କିନ୍ତୁ ମନେରଖ, ମୋ ଭଳି ଦୁଃଖି ସଂସାରରେ ବିରଳ । ମୋର ସବୁଥାଇ କିଛି ନାହିଁ । ସେକଥା ମନେ ପଡ଼ିଲେ, ଛାତି ଫାଟି ଗଲାପରି ଲାଗୁଛି ।"

କାଠୁରିଆ ତା'ପରେ ତା' ବିଷୟରେ ଜାଣିବାକୁ ବହୁତ ଚେଷ୍ଟା କଲା । ଦିନେ ଖୁବ୍ ବାଧ କରିବାରୁ ଝିଅଟି କହିଲା— "ବାପା, ଆମର ପଇସାର ଅଭାବ ନାହିଁ । ତୁମେ ଯଦି ମୋତେ ପ୍ରକୃତରେ ଭଲ ପାଅ, ରାଜାଙ୍କର ସବୁ ଦାସୀଙ୍କୁ ପଇସା ଦେଇ ତାଙ୍କୁ ହାତ କର । ତା' ଭିତରୁ ଜଣକୁ ଧରି ନୂଆ ରାଣୀଙ୍କର ଯଦି ଆଖି ତାଡ଼ି ଆଣି ମୋତେ ଦେବ, ମୁଁ ମୋର ଦୃଷ୍ଟିଶକ୍ତି ଫେରି ପାଇବି ।"

ସେଇଦିନୁ କାଠୁରିଆ ଅଧିକାଂଶ ସମୟ ରାଜ ଉଆସକୁ ଯାଏ । ଆସ୍ତେ ଆସ୍ତେ ସେ ସବୁ ଦାସୀଙ୍କୁ ହାତ କଲା । ତାଙ୍କୁ ସେ ଯାହା ବକ୍‌ସିସ ଦିଏ, ଅନ୍ୟମାନେ କଳ୍ପନା କରିପାରିବେ ନାହିଁ । ସବୁଠାରୁ ଯେ ଦୁଃସାହସୀ ଓ ବୁଦ୍ଧିମତୀ, ତାକୁ କାଠୁରିଆ ଆବିଷ୍କାର କଲା । ତା' ପାଖରେ ଅଜସ୍ର ମୁଦ୍ରା ଅଜାଡ଼ି ଦେଲା । ସେ ଏବେ କାଠୁରିଆର ବିଶ୍ୱସ୍ତ । ଦିନେ ସୁବିଧା ଦେଖି କାଠୁରିଆ କହିଲା— "ମୋତେ ଯଦି ତୁ ସାନ ରାଣୀଙ୍କର ଆଖି ଦୁଇଟି ଆଣି ଦେବୁ, ତୁ

ଯାହା ଚାହିଁବୁ, ମୁଁ ତୋତେ ଦେଇ ଦେବ ।”

ଏତେ ଗୁଡ଼ାଏ ସୁନା ରୂପା, ମୁକ୍ତା ଦେଖି ଦାସୀଟି ପାଗଳ । ସାନ ରାଣୀଙ୍କର ଆଖି ଛାଡ଼ିବାକୁ ସେ ବ୍ୟାକୁଳ । ସେଥିପାଇଁ ସାନ ରାଣୀର ସେବା ସେ ବେଶି କରେ । ଏବେ ରାତିରେ ତାଙ୍କ ଘରେ ଶୁଏ । ଅନ୍ୟ ଦାସୀମାନେ କାହିଁକି ରାଣୀଙ୍କର ଶୋଇବା ଘର ପାଖରେ ଶୋଉଛନ୍ତି, ସେଥିପାଇଁ ଆପତ୍ତି କରେ । ସାନରାଣୀ ଏବେ ତା’ ହାତ ମୁଠାରେ । ତାର ପରାମର୍ଶରେ ଆଉ କେହି ଦାସୀ ସାନରାଣୀଙ୍କ ଘରେ ଶୋଇଲେ ନାହିଁ । କେବଳ ଏଇ ଦାସୀ ତାଙ୍କୁ ଜଗିକରି ଶୁଏ ।

ଗୋଟିଏ ରାତିରେ ଦାସୀଟି ସାନରାଣୀଙ୍କର ହାତ ଗୋଡ଼ ବାନ୍ଧି ଦେଲା । ପାଟିରେ ଲୁଗା ପୂରାଇ ତାଙ୍କ ଆଖି ଦୁଇଟି ଛାଡ଼ି ନେଇଗଲା । ସେ ଆଖିକୁ ନେଇ କାଠୁରିଆକୁ ଦେଇ ସେଇ ରାତିରେ ସେ ଦେଶ ଛାଡ଼ି ପଳାଇଲା ।

କାଠୁରିଆଟି ଆଖି ଦୁଇଟି ଆଣି ଝିଅକୁ ଦେଲା । ସେଇ ଆଖି ଦୁଇଟି ଋଷିକନ୍ୟା ଯେମିତି ତା’ ଆଖିରେ ଲଗାଇଛି, ସେ ସବୁ ଦେଖି ପାରିଲା । ସେ କାଠୁରିଆକୁ କହିଲା—“ବାପା, ତୁମେ ମୋର ପ୍ରକୃତରେ ବାପା । ତମ ଯୋଗୁ ମୁଁ ଦେଖିପାରୁଛି ।”

ଏଣେ କାଠୁରିଆର ସମ୍ପତ୍ତି ବୃଦ୍ଧି ଯୋଗୁ ସେ ବହୁ ଲୋକଙ୍କର ଚକ୍ଷୁଶୂଳ ହୋଇଗଲାଣି । ସେମାନେ ତା’ ବିରୁଦ୍ଧରେ ନାନା କଥା ରାଜାଙ୍କୁ କହୁଥାନ୍ତି । ରାଜା ସଠିକ କଥା ଜାଣିବାପାଇଁ କାଠୁରିଆକୁ ଡକାଇଲେ । ତାଠାରୁ ସବୁକଥା ଶୁଣିଲେ । କାଠୁରିଆ ଝିଅ କାନ୍ଦିଲେ ଯେ ଲୁହ ତାର ମୁକ୍ତା ହେଉଛି, ସେ କଥା ଶୁଣି ରାଜାଙ୍କ ମନରେ ଦ୍ୱନ୍ଦ୍ୱ ଆସିଲା । ସେ ଜାଣନ୍ତି, ବିବାହ ପୂର୍ବରୁ ରାଣୀଙ୍କର ଲୁହ ମୁକ୍ତା ହେଉଥିଲା । କିନ୍ତୁ ରାଜ ଉଆସକୁ

ଆସିବା ପରେ ସେ କାନ୍ଦ ନାହାନ୍ତି । କାନ୍ଦିବାପାଇଁ କହିଲେ, ସେ କଥାଟାକୁ ବାଁରେଇ ଦିଅନ୍ତି । ଏଣେ କାଠୁରିଆ ଝିଅ କାନ୍ଦିଲେ ଲୋତକ ମୁକ୍ତା ହେଉଛି । ଏହା ଭିତରେ କିଛି ରହସ୍ୟ ଥିଲପରି ତାଙ୍କୁ ଲାଗିଲା । ସେଥିପାଇଁ ରାଜା ବ୍ୟସ୍ତ ଓ ବିବ୍ରତ । ସଠିକ୍ କଥା ଜାଣିବାପାଇଁ ସେ କାଠୁରିଆ ଝିଅକୁ ଦରବାରକୁ ଡକାଇଲେ ।

କାଠୁରିଆ ଝିଅକୁ ଦେଖି ରାଜା ଆଶ୍ଚର୍ଯ୍ୟ । ଏପରି ସୁନ୍ଦର ଝିଅ ଦେଖିବାକୁ ମିଳିବା ଅସମ୍ଭବ । ତାକୁ କହିବାରୁ ସେ କାନ୍ଦିଲା । ଲୋତକ ତାର ତଳେ ପଡ଼ି ମୁକ୍ତା ପାଲଟିଗଲା । ରାଜାଙ୍କ ମନେ ପଡ଼ିଲା—ଏମିତି ମୁକ୍ତା ସେ ଋଷିଙ୍କ ଆଶ୍ରମରେ ସଂଗ୍ରହ କରିଥିଲେ । ତାପରେ ପଚାରିବାରୁ ସେ ସମସ୍ତ ବୃତ୍ତାନ୍ତ ରାଜାଙ୍କୁ କହିଲା ।

ରାଜା ଦରବାରକୁ ନୂଆ ରାଣୀକୁ ଡକାଇ ପଠାଇଲେ । ରାଣୀ ମନାକରି ପଠାଇବାରୁ ରାଜା ରାଗିଗଲେ । ଶୀଘ୍ର ତାଙ୍କୁ ଧରି ଆଣିବାକୁ ହୁକୁମ ଦେଲେ । ରାଣୀ ସେତେବେଳକୁ ଅନ୍ଧ । ବହୁ କଷ୍ଟରେ ତାଙ୍କୁ ଦରବାରକୁ ଅଣାଗଲା । ରାଜା ତାଙ୍କୁ କାହିଁକି ବିବାହ କଲେ ବୋଲି ପଚାରିବାରୁ ସେ କିଛି କହିପାରିଲା ନାହିଁ । ବରଂ କାନ୍ଦିଲା । ଲୁହ ତାର ତଳେ ପଡ଼ିଲା ସତ, କିନ୍ତୁ ଗୋଟିଏ ହେଲେ ମୁକ୍ତା ହେଲା ନାହିଁ ।

କାଠୁରିଆ ଝିଅର କଥା ରାଜା ବିଶ୍ୱାସ କଲେ । ନକଲି ରାଣୀକୁ ଶୂଳୀରେ ବସାଇବାପାଇଁ ଆଦେଶ ଦେଲା ।

卐

# ହମାଲ ଓ ନାଗରାଜ

ଅନନ୍ତ ନାଗ କାଶ୍ମୀରରେ । ତାହା ହିନ୍ଦୁମାନଙ୍କର ପ୍ରସିଦ୍ଧ ତୀର୍ଥ । ସେଠି ନାଗଟିଏ ପୂଜା ହୁଏ ।

ବହୁଦିନ ତଳେ ସେଠାରେ ଗୋଟିଏ ବ୍ରାହ୍ମଣ ତା ସ୍ତ୍ରୀ ସହିତ ରହୁଥିଲା । ସେମାନେ ଭାରି ଗରିବ । ଦୁଇବେଳା ଦି'ଟା ପେଟ ପୂରାଇ ଖାଇବାକୁ ସେମାନେ ପାଉନଥିଲେ ।

ବ୍ରାହ୍ମଣୀଟିର ସହିବା ଶକ୍ତି କମ୍ । ସେ ଟିକିଏ କଥାରେ ରାଗେ । ପାଟିକୁ ଯାହା ଆସେ, ତା' ସେ କହେ । ଭୋକ ବେଳେ, ତା' କଥା ତ ଗୁଡ଼ । ସେ ସାପପରି ଫଁ ଫଁ ହୁଏ । ବ୍ରାହ୍ମଣକୁ ଖୁବ୍ ଗାଳି ଦିଏ । ସପ୍ତପୁରୁଷ ଉଖାରେ । ଧିକ୍କାର କରି କହେ—
"ଯାହାର ଖାଇବାକୁ ନାହିଁ, ସେ ବାହା ହେଉଥିଲା କାହିଁକି ?"

ବ୍ରାହ୍ମଣଟି ଠିକ୍ ଓଲଟା । ଭୁଠପଥର ପରି ସବୁ ସେ ସହେ । ସ୍ତ୍ରୀକୁ କେବେହେଲେ କିଛି ଉତ୍ତର ଦିଏନାହିଁ ।

ଦିନେ ଘରେ ତାଙ୍କର କିଛି ନଥିଲା । ପୂର୍ବଦିନ ରାତିରେ ସେମାନେ ଉପାସ ପଡ଼ିଥିଲେ । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବାକୁ ହେଲେଣି, ବ୍ରାହ୍ମଣଟି କ'ଣ କିଛି ଖାଇବାକୁ ଆଣିବାକୁ ବାହାରୁ ନାହିଁ । ଏକଥା ଦେଖି ସ୍ତ୍ରୀ ତାର ରାଗରେ ନିଆଁ । ଦୁମ୍‌ଦୁମ୍ ହୋଇ ଘରକୁ ଯାଇ ବ୍ୟାଗଟିଏ ଆଣିଲା । ସେଇଟିକୁ ବ୍ରାହ୍ମଣ ପାଖକୁ ଫିଙ୍ଗି ଦେଇ କହିଲା—"ଘରେ ତ କିଛି ନାହିଁ । ଏଠି ବସି ଲାଭ କ'ଣ ? ବ୍ୟାଗଟି ଦେଲି । ତାକୁ ନେଇଯାଅ । କିଛି ଖାଇବା ଜିନିଷ ଧରି ଫେରିବ । ଖବରଦାର, ଖାଲି ହାତରେ ଯେପରି ନ ଫେର ।"

ସ୍ତ୍ରୀର ଆଚରଣ ଦେଖି ବ୍ରାହ୍ମଣ ତାଜୁବ । ଏ ଅସମୟରେ

କୁଆଡ଼େ ଯାଇ କାହାକୁ ମାଗିବ, ସେ ଜାଣିପାରିଲା ନାହିଁ । ତାର ତ ସ୍ତ୍ରୀକୁ ଭାରି ଡର । ସେ ତ ଦେଖିଲା—ଘରେ ବସିଲେ, ସ୍ତ୍ରୀର ତାର ପାଟି ବାଜିବ । ଘର ସେ ଉଠାଇବ କି ପକାଇବ । ସାହି ପଡ଼ଶା ହସିବେ । ବରଂ ଏଠାରୁ ପଳାଇଗଲେ ରକ୍ଷା । ସେ ଏକ ଦୀର୍ଘ ନିଃଶ୍ୱାସ ପକାଇ ତାର ବସିବା ଜାଗାରୁ ଉଠିଲା । ତା'ପରେ ଗୋଡ଼ ଯୁଆଡ଼େ ଟାଣିଲା, ସେଇଆଡ଼େ ସେ ମୁହାଁଇଲା । ପଛକୁ ଟିକିଏ ହେଲେ ବି ଅନାଇଲା ନାହିଁ ।

ସେ ଯେ କେତେବେଳେ ଅନନ୍ତନାଗଙ୍କ ପବିତ୍ର ପୋଖରୀ ପାଖରେ ପହଞ୍ଚିଗଲାଣି, ତାକୁ ଜଣା ନାହିଁ । ସେଠି ସେ ଚାରିଆଡ଼କୁ ଚାହିଁଲା । ଜାଗାଟି ଭାରି ଭଲ । ସ୍ଥାନଟି ପରିଷ୍କାର ଆଉ ନିର୍ମଳ । ପରିବେଶ ଶାନ୍ତ । ମନୋମୁଗ୍‌ଧକର । ସେଠି ତା ସ୍ତ୍ରୀର ଦୌରାମ୍ମ୍ୟ ନାହିଁ । ସେ ଏଠି ଏକପ୍ରକାର ଆଶ୍ୱସ୍ତ । ସେଇଠି ସେ ବସିପଡ଼ିଲା । କାଲିଠାରୁ ସେ ତ ଉପାସ । ଦେହ ହାତ ଆଉ ଚଳୁନାହିଁ । ଟିକିଏ ଯେମିତି ଥଣ୍ଡା ପବନ ତା' ଦେହରେ ବାଜୁଛି, ତା' ଆଖି ଖାଲି ବୁଜି ହୋଇ ଆସିଲା । ସେ କିଛି ନ ଭାବି ନ ଚିନ୍ତି ନିଜକୁ ଲମ୍ବାଇ ଦେଲା । ମୁହୂର୍ତ୍ତିକ ମଧ୍ୟରେ ସେ ନିଦ୍ରାଘୋଡ଼ ନିଦରେ ସେଠାରେ ଶୋଇଗଲା ।

ନିଦ ତାର ଭାଙ୍ଗିଲା ବହୁତ ଡେରିରେ । ସେତେବେଳକୁ ବେଳ ଆଖିର । ଚାରିଆଡ଼କୁ ସେ ଚାହିଁଲା । କ'ଣ କରିବ ସେ ଜାଣିପାରିଲା ନାହିଁ । ଘରକୁ କେମିତି ଫେରିବ, ସେଇଟା ତାର ଚିନ୍ତା । ଏତିକିବେଳେ ବ୍ୟାଗ ଭିତରେ ତାର କ'ଣ ଗୋଟିଏ ସର୍‌ର ସର୍‌ର ହୋଇ ଗତି କଲା । ସେ ଜାଣିଲା ଯେ ସାପଟିଏ ବ୍ୟାଗ ଭିତରେ ପଶିଛି । ତା' ମୁଣ୍ଡକୁ ଦୁଷ୍ଟ ବୁଦ୍ଧି ଆସିଲା । ଭାବିଲା—ଏ ସାପଟିକୁ ନେଇ ତା' ସ୍ତ୍ରୀକୁ ଦେଇଦେବ । ତାପରେ

ବ୍ୟାଗ ମୁହଁକୁ ସେ ବନ୍ଦ କରିଦେଲା । ଡେରି ନକରି ଦ୍ରୁତ ଗତିରେ ତା' ଘର ଆଡ଼େ ଚାଲିଲା । ବାଟରେ ତାର ମନରେ ଆସିଲା— ତାର ଫେରିବା ଦେଖି ସ୍ତ୍ରୀ ତାର ଧାଇଁ ଆସିବ । ହାତରୁ ବ୍ୟାଗଟି ଛଡ଼ାଇ ନେବ । ଅସମ୍ଭାଳ ହୋଇ ଖୋଲିବ । ସାପଟି ବ୍ୟାଗରେ ବନ୍ଦ ହୋଇଥିବାରୁ ରାଗରେ ଫାଟିପଡ଼ୁଥିବ । ବ୍ୟାଗ ଖୋଲିବା ମାତ୍ରେ ସ୍ତ୍ରୀକୁ ତାର ଚୋଟେ ପକାଇବ । ତାପରେ ସେ ଆଉ ଭାବି ପାରିଲା ନାହିଁ । ଆଖି ଦୁଇଟି ତାର ଆପେ ଆପେ ବୁଜି ହୋଇଗଲା ।

ଘରେ ସେ ପହଞ୍ଚିବା ମାତ୍ରେ ସ୍ତ୍ରୀ ତାର ଧାଇଁ ଆସି ବ୍ୟାଗକୁ ତା' ହାତରୁ ଝାମ୍ପି ନେଲା । ତାପରେ ତର ତର ହୋଇ ସେ ଠିଆରେ ଠିଆରେ ବ୍ୟାଗର ମୁହଁ ଖୋଲି ଦେଲା । ସାପର ଭୟଙ୍କର ଗର୍ଜନ ଶୁଣି ବ୍ୟାଗଟି ଦୂରକୁ ଫିଙ୍ଗିଦେଲା ।

ସାପଟି ଛିଟିକି କରି ବ୍ୟାଗଠାରୁ ଦୂରରେ ପଡ଼ିଲା । ଆଶ୍ଚର୍ଯ୍ୟ ! ସାପଟି ତଳେ ପଡ଼ିବା ମାତ୍ରେ ସେ ଗୋଟିଏ ଦିବ୍ୟସୁନ୍ଦର ମଣିଷ ପିଲା ହୋଇଗଲା । ପିଲାଟି ସ୍ପଷ୍ଟ ଭାବରେ କହିଲା— "ଆଜିଠାରୁ ତୁମେମାନେ ମୋର ବାପ ଓ ମା । ମୁଁ ତୁମମାନଙ୍କର ପୁଅ । ଯେ ପଚାରିଲେ ଏଇଆ କହିବ । ମୁଁ ଯେ ସାପରୁ ମଣିଷ ହୋଇଛି, ଏକଥା କେହି ଯେପରି ଜାଣିବେ ନାହିଁ ।"

ସେମାନେ ନିଃସନ୍ତାନ । ପିଲାଟିଏ ପାଇଁ ବ୍ରାହ୍ମଣୀ ଉତ୍ତଳ ବିକଳ ହେଉଥିଲା । ପୁଅଟିଏ ପାଇବାରୁ ସେମାନେ ଭାରି ଖୁସି । ବ୍ରାହ୍ମଣୀ ଧାଇଁଯାଇ ତାକୁ ତଳୁ ଉଠାଇ ନେଲା । ଆନନ୍ଦରେ ଉଭୟେ ନାଚିଲେ । ସେମାନେ ପ୍ରକୃତିସ୍ଥ ହେବାକୁ କିଛି ସମୟ ଲାଗିଲା । ସ୍ୱାମୀ ସ୍ତ୍ରୀ ଭାବିଚିନ୍ତି ପିଲାଟିର ନାଁ ଦେଲେ ନାଗରାଇ ଅର୍ଥାତ୍ ନାଗ ମଧ୍ୟରେ ରାଜା ।

ସମୟ କାହାକୁ ଅପେକ୍ଷା କରେ ନାହିଁ । ଗୁହୁଁ ଗୁହୁଁ ଦିନ

ଗଡ଼ିଯାଏ । କାଲିକାର ଶିଶୁ ନାଗରାଇ ଏବେ ଯୁବକ । ଦେଖିବାକୁ ଖୁବ୍ ସୁନ୍ଦର, କନ୍ଦର୍ପ ସଙ୍ଗେ ସମାନ ।

ନାଗରାଇ ପରିଷ୍କାର ପାଣିରେ ଗାଧୋଇବାକୁ ଭଲ ପାଏ । ସେଠି ରାଜବାଟି ଛଡ଼ା କୌଣସିଠାରେ ସୁନ୍ଦର ପୋଖରୀ ନଥିଲା । କିନ୍ତୁ ରାଜବାଟିକୁ ସର୍ବସାଧାରଣ ପ୍ରବେଶ ନିଷେଧ । ସେ ତ ଜଣେ ଗରିବ ବ୍ରାହ୍ମଣର ପୁଅ । ତେଣୁ ତା'ର ସେଠାକୁ ଯାଇ ଗାଧୋଇବାର ପ୍ରଶ୍ନ ଉଠୁନାହିଁ ।

ଦିନକର କଥା । ନାଗରାଇ ରାଜବାଟୀର ପ୍ରାଚୀର ପାଖକୁ ଯାଇଥିଲା । ସେଠି ସେ ଦେଖିଲା—ପ୍ରାଚୀର ଦେହରେ ଗୋଟିଏ ଫାଟ ଅଛି । ସେଥିରେ ରାଜବାଟୀ ଭିତର ପରିଷ୍କାର ଭାବରେ ଦେଖି ହେଉଛି । ନାଗରାଇ ନିଜର ଲୋଭ ସମ୍ବରଣ କରିପାରିଲା ନାହିଁ । ସେ ନିଜର ରୂପ ବଦଳାଇ ଦେଲା । ଏବେ ସେ ଗୋଟିଏ ସାପ । ଆରପଟକୁ ଫାଟ ବାଟେ ଯିବାକୁ ତାକୁ କଷ୍ଟ ହେଲା ନାହିଁ । ସେ ପୋଖରୀ ପାଖରେ ପହଞ୍ଚି ରୂପ ବଦଳାଇ ଦେଲା । ମନ ଖୁସିରେ ଖୁବ୍ ଗାଧୋଇଲା । ତାପରେ ସେ ଚାଲିଆସିଲା ପ୍ରାଚୀରର ଫାଟ ପାଖକୁ । ସେଠି ରୂପ ବଦଳାଇ ଏ ପଟକୁ ଆସି ପୁଣି ମଣିଷ ହୋଇଗଲା ।

ବାରେ ନୁହେଁ, ବହୁବାର ନାଗରାଇ ରୂପ ପରିବର୍ତ୍ତନ କରି ଗୋପନରେ ରାଜବାଟୀରେ ପଶେ । ସେଠି ପୋଖରୀରେ ଗାଧୋଇ ସାରି ପୁଣି ରୂପ ପରିବର୍ତ୍ତନ କରି ଏପଟକୁ ଚାଲିଆସେ । କିନ୍ତୁ ତା'ଉପରେ କାହାର ନଜର ପଡ଼େ ନାହିଁ ।

ସେଠାକାର ରାଜାଙ୍କର ଗୋଟିଏ ବୋଲି ଝିଅ । ଅପୂର୍ବ ସୁନ୍ଦରୀ ସେ । ନାଁ ତାର ହୀମାଳ । ସେ ପୋଖରୀ କୂଳ ଉଆସରେ ରହେ । ଝରକା ବାଟେ ପୋଖରୀକୁ ଅନାଇ ରହିବା ତାର

ଅଭ୍ୟାସ । ଦିନେ ଗାଧୋଉଥିବା ବେଳେ ନାଗରାଇ ଉପରେ ତାର ନଜର ପଡ଼ିଲା ।

ଏପରି ସୁନ୍ଦର ଯୁବକକୁ ହିମାଲ କେବେ ଆଗରୁ ଦେଖି ନଥିଲା । ନାଗରାଇକୁ ଦେଖି ସେ ପାଗଳୀ । ତା' ଖବର ଜାଣିବାକୁ ସେ ଉଚ୍ଛନ୍ନ । ସେଥିପାଇଁ ଦାସୀଟିକୁ ତାର ପରିଚୟ ଆଣିବାକୁ ପଠାଇଲା ।

ଦାସୀଟି ଯୁବକ ପାଖରୁ ଫେରି ଆସି କହିଲା—"ଯୁବକଟି ଜଣେ ଗରିବ ବ୍ରାହ୍ମଣର ପୁଅ । ଉଆସର ପାଚେରି ଆରପଟେ ତାର ଘର । ନାଁ ତାର ନାଗରାଇ ।"

ଯୁବକକୁ ଦେଖିଲା ବେଳୁ ହିମାଲର ମନ କେଉଁଠି ଆଉ ଲାଗୁନଥାଏ । ସବୁବେଳେ ସେ ତା'ର କଥା ଭାବୁଥାଏ । ସେ ଗଭୀର ଭାବରେ ନାଗରାଇ କଥା ଏମିତି ଭାବିଲା ଯେ ସେ ତାର ଖାଇବା ପିଇବା ଛାଡ଼ି ଦେଲା । ନଖାଇ ନପିଇ ଆସ୍ତେ ଆସ୍ତେ ସେ ଶୁଖିବାକୁ ଲାଗିଲା ।

ତା'ର ଏ ଅବସ୍ଥା ଦେଖି ରଜାରାଣୀ ଉଭୟେ ବ୍ୟସ୍ତ । ଯେତେ ପଚାରିଲେ ହିମାଲ କିଛି କହେ ନାହିଁ । ଦାସୀମାନଙ୍କଠାରୁ ରାଣୀ ସବୁ ଖବର ନେଲେ । ନାଗରାଇଠାରୁ ତାର ପରିଚୟ ଆଣିବାକୁ ଯେଉଁ ଦାସୀ ଯାଇଥିଲା, ହିମାଲର ମନକଥା ସେ ରାଣୀଙ୍କୁ ଜଣାଇଲା । ରାଣୀ ସୁବିଧାଟିଏ ପାଇବାରୁ ଝିଅକୁ କହିଲେ—"ମା, ତୋ ମନ କଥା ମୋତେ ଖୋଲିକରି କହ । ମୁଁ ଜବାବ ଦେଉଛି, ତୋ ମନସ୍କାମନା ପୂରଣ କରିଦେବି ।"

ହିମାଲ କହିଲା—"ପ୍ରାଚୀର ଆରପଟେ ଗୋଟିଏ ଗରିବ ବ୍ରାହ୍ମଣ ରହେ । ତା'ର ଗୋଟିଏ ଦିବ୍ୟ ସୁନ୍ଦର ପୁଅ ଅଛି । ମୁଁ ତାକୁ ବିବାହ କରିବାକୁ ଚାହେଁ । ଯେବେ ମୋତେ ଯଦି ବିବାହ ନଦେବ,

ତାହାହେଲେ ମୁଁ ପ୍ରାଣ ହରିଦେବ ।"

ଝିଅର କଥା ଶୁଣି ରାଣୀ ଆଶ୍ଚର୍ଯ୍ୟ । ମନକୁ ତାଙ୍କର ଏ ପ୍ରସ୍ତାବ ଜମା ପାଇଲା ନାହିଁ । ଏଣେ ଝିଅକୁ ଯେ କଥା ଦେଇଛନ୍ତି । ତାଙ୍କର ଉପାୟ ନଥିଲା । ସେଥିପାଇଁ ସେ ରାଜାଙ୍କୁ ସବୁକଥା କହିଲେ । ରାଜା ମଧ୍ୟ ଏ ପ୍ରସ୍ତାବ ଶୁଣି ଅସନ୍ତୁଷ୍ଟ । ସେ ଜାଣନ୍ତି— ଝିଅ ତାଙ୍କର ଅପୂର୍ବ ସୁନ୍ଦରୀ । ବହୁ ରାଜକୁମାର ତା'ର ହାତ ଧରିବାକୁ ଲାଳାୟିତ । ଏପରି ସ୍ଥଳେ ଜଣେ ଦରିଦ୍ର ବ୍ରାହ୍ମଣର ସନ୍ତାନ ସାଥିରେ ତାକୁ ବିବାହ କରିବାଟା ସୁନ୍ଦର ହେବ ନାହିଁ । ସେ ଝିଅକୁ ବହୁତ ବୁଝାଇଲେ । କିନ୍ତୁ ଝିଅ ତା' କଥାରେ ଅଟଳ । ପ୍ରାଣ ହାରିଦେବାର ଧମକ ବି ଦେଲା । ରାଜାଙ୍କର ଉପାୟ ନଥିଲା । ସେ ଶେଷକୁ ଝିଅ କଥାରେ ସମ୍ମତି ପ୍ରଦାନ କଲେ ।

ପରଦିନ ରାଜା ନାଗରାଇର ବାପାକୁ ଡକାଇ ପଠାଇଲେ । ରାଜାଙ୍କର ଡାକରା ଶୁଣି ଗରିବ ବ୍ରାହ୍ମଣଟି ଗ୍ଲାନିଆ । ଯିବାକୁ ତାର ଜମା ଇଚ୍ଛା ନଥାଏ । ରାଜାଦେଶ ତ ଏଡ଼ାଇ ହେବ ନାହିଁ । ତେଣୁ ସେ ବାଧ୍ୟ ହୋଇ ଗଲା ।

ବ୍ରାହ୍ମଣଟିକୁ ଦେଖି ରାଜା ସମ୍ମାନ ସହ ଆସନ ଦେଲେ । ତାପରେ ଝିଅର ବିବାହ ପ୍ରସ୍ତାବ ତା' ପୁଅ ସାଥିରେ ପକାଇଲେ । ବ୍ରାହ୍ମଣ ଏ ପ୍ରସ୍ତାବ ଶୁଣି ଅବାକ୍ । କ'ଣ କହିବ ସେ ସ୍ଥିର କରି ପାରିଲା ନାହିଁ । ବହୁ କଷ୍ଟରେ ଥରି ଥରି ସେ କହିଲା— "ମହାରାଜ, ଏହା ଏକ ଅବାସ୍ତବ ପ୍ରସ୍ତାବ । ରାଜଜେମା ଜଣେ ଗରିବ ବ୍ରାହ୍ମଣର ପୁଅକୁ ବିବାହ କରି ନ ପାରନ୍ତି । ଅତଏବ ଏ ବିଷୟରେ ଆଲୋଚନା କରି ମୋତେ ଲଜ୍ଜା ଦିଅନ୍ତୁ ନାହିଁ ।"

ରାଜା କହିଲେ—"ତୁମେ ଯାହା କହୁଛ, ସତ୍ୟ । କିନ୍ତୁ ମୋ ଝିଅର ଏକା ଜିଦ୍ ଯେ ସେ ତୁମ ପୁଅକୁ ବିବାହ କରିବ । ଏଥିରେ

ଆମର କିଛି କରିବାର ନାହିଁ । ଖାଲି ଯାହା ବିବାହ କରି ଦେବାର କଥା ।"

ବ୍ରାହ୍ମଣର ମନା କରିବାକୁ କିଛି ନ ଥିଲା । ସମ୍ମତି ଦେଇ ସେ ଘରକୁ ଆସି ପୁଅ ଓ ସ୍ତ୍ରୀକୁ ଏକଥା ଜଣାଇ ଦେଲା ।

ଏକଥା ଯେ ଶୁଣିଲା, ଅପସନ୍ଦ କଲା । କାହା ମନରେ ସୁଖ ନ ଥାଏ । ତଥାପି ରାଜା ଘରେ ଝିଅର ବିବାହ ପାଇଁ ପ୍ରସ୍ତୁତି ଚାଲିଥାଏ ।

ବିବାହ ଆଉ ଅଳ୍ପଦିନ ବାକି । ବ୍ରାହ୍ମଣର ପଇସା ଅଭାବରୁ ସେ କିଛି ଆୟୋଜନ କରିପାରୁ ନଥାଏ । ସବୁବେଳେ ବ୍ରାହ୍ମଣ ଭାବୁଥାଏ—ରାଜା ଘରେ ପୁଅର ବାହାଘର ହେବ । ବରଯାତ୍ରୀ ଯିବେ । କ'ଣ ସେ କରିବ ! ଖାଲି ହାତରେ ପଞ୍ଚେ ବ୍ରାହ୍ମଣଙ୍କୁ ନେଇ ସେ କ'ଣ ସେଠି ପହଞ୍ଚିବ ? ଏହା କ'ଣ ସୁନ୍ଦର ଦେଖାଯିବ ? ଲୋକେ ବରଯାତ୍ରୀଙ୍କୁ ଦେଖି ହସିବେ । ସେ ଲୋକଲଜ୍ଜା ମରଣରୁ ବଳିଯିବ ।

ଏସବୁ ଭାବିଭାବି ବ୍ରାହ୍ମଣର ଏପରି ଦୁଃଖ ଯେ ସେ ଖାଇବା ପିଇବା ଛାଡ଼ିଦେଲା । ନାଗରାଇ ଏସବୁ ଦେଖି ଦିନେ ତାର ବାପାକୁ ପାଖରେ ବସାଇ କହିଲା—"ବାପା, ତୁମେ ବ୍ୟସ୍ତ ହୁଅ ନାହିଁ । ରାଜାଙ୍କ ଝିଅକୁ ମୁଁ ବିବାହ କରୁଛି । ଆମେ ବି ରୋଷଣୀ କରି ବରଯାତ୍ରୀଙ୍କୁ ନେଇକରି ଯିବା । ସେଥିପାଇଁ ଯାହା ଦରକାର ହେବ ମୁଁ ବ୍ୟବସ୍ଥା କରିବ । ତୁମେ ଗୋଟିଏ କାମ କର । ଏଇ ବକଳ ଖଣ୍ଡିକ ନେଇ ଯାଅ । ଅନନ୍ତନାଗଙ୍କ ଯେଉଁ ପୋଖରୀ କୂଳରୁ ମୋତେ ଆଣିଥିଲ, ସେଇ ପୋଖରୀରେ ଏହାକୁ ପକାଇଦେବ ।"

ବ୍ରାହ୍ମଣର ପୁଅ କଥା ନ ମାନିବାକୁ ଗତି ନାହିଁ । ସେ ବକଳଟିକୁ ନେଇ ନିର୍ଦ୍ଦିଷ୍ଟ ପୋଖରୀ ପାଖକୁ ଗଲା । ପାଣିରେ

ସେଇଟିକୁ ପକାଇ ଦେଲା । କ'ଣ ହେବ, ଦେଖିବାକୁ ସେ ଅପେକ୍ଷା କଲା । ବଳଦଟି ପାଣିରେ ବୁଡ଼ିଗଲା ସିନା, କିଛି ପରିବର୍ତ୍ତନ ହେଲା ନାହିଁ । ବେଳ ଆସି ବୁଡ଼ିଲା । ଅପେକ୍ଷା କରି କରି ବ୍ରାହ୍ମଣଟିର ଧୈର୍ଯ୍ୟ ତ ଭାଙ୍ଗିଲା । କେହି ଆସିଲେ ନାହିଁ କି କିଛି କହିଲେ ନାହିଁ । ବାଧ ହୋଇ ବ୍ରାହ୍ମଣ ଘରକୁ ଫେରିଆସିଲା । ବାଟଯାକ ସେ ଭାବୁଥାଏ—ସାନ୍ତ୍ୱନା ଦେବାକୁ ପୁଅ କେବଳ ତାକୁ ଏଠାକୁ ପଠାଇଥିଲା ।

ସେ ଘର ପାଖରେ ପହଞ୍ଚି ଦେଖେ ତ ତାର ପୁରୁଣା କୁଡ଼ିଆ ସେଠି ନାହିଁ । ତା' ସ୍ଥାନରେ ଏକ ବିରାଟ ଅଟ୍ଟାଳିକା ଠିଆ ହୋଇଛି । ଗୁଡ଼ିଏଟେ ସୁନ୍ଦର ସୁନ୍ଦର ପୋଷାକ ପିନ୍ଧି ପ୍ରହରୀ ପଇଁତରା ମାରୁଛନ୍ତି । ସୁସଜ୍ଜିତ ସୈନ୍ୟ ଦ୍ୱାର ସମ୍ମୁଖରେ ଦଣ୍ଡାୟମାନ । ବାହାରେ ଅଗଣିତ ହାତୀ ସୁସଜ୍ଜିତ ହୋଇ ଧାଡ଼ି ବାନ୍ଧି ଠିଆ ହୋଇଛନ୍ତି । ଭିତରେ ଭୋଜି ଭାତ ଖୁବ୍ ଚାଲିଛି । ସେ ତାର ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ବହୁବାର ଆଖି ମକଚି ଚାହିଁଲା ଯେଉଁ କଥାକୁ ସେଇକଥା । ଏତିକିବେଳେ ନାଗରାଇ ପଦାକୁ ଆସିଲା । ସେ ବି ରାଜପୋଷାକ ପିନ୍ଧିଛି । ପଛେ ପଛେ ତାର ଦେହରକ୍ଷୀ । ବ୍ରାହ୍ମଣକୁ ସବୁ ସ୍ୱପ୍ନ ଭଳି ଲାଗୁଥାଏ । ସେ ଶେଷକୁ ଭାବିଲା—ଏସବୁ ନାଗରାଇର କରାମତି । ପାଣିରେ ବଳଦ ପକାଇବାର ଫଳ । ସେ ଧିରେ ଧିରେ ତାର ଘରେ ପ୍ରବେଶ କଲା ।

ବିବାହ ପାଇଁ ବରଯାତ୍ରୀ ଦଳ ଚାଲିଲେ । ଏପରି ଶୋଭାଯାତ୍ରା ଓ ସଳଖେନ ଏ ରାଜ୍ୟରେ କେହି କେବେହେଲେ ଆଗରୁ ଦେଖି ନଥିଲେ । ଜଣେ ଗରିବ ବ୍ରାହ୍ମଣ ପୁଅ ଯେ ରାଜାଝିଅକୁ ବିବାହ କରୁଛି, ସେକଥା ଲୋକ ଭୁଲିଗଲେ ।

ଖୁବ୍ ଜାକଜମକରେ ବିବାହ ସମାପ୍ତ ହେଲା । ହିମାଳ ଓ

ନାଗରାଇ ରାଜାଙ୍କ ଘରୁ ବିଦା ହୋଇ ଆସିଲେ । ସେମାନଙ୍କ ପାଇଁ ତଥାପି ଏକ ନୂଆ ନଅରକୁ ସେମାନେ ଗଲେ । ସେଇଠି ସେମାନେ ରହିଲେ । ଉଭୟଙ୍କୁ ଉଭୟେ ପାଇ ମହାଆନନ୍ଦ । ଦିନଗୁଡ଼ିକ ପାଣି ଭଳି ଗଡ଼ିଚାଲିଲା ।

ସବୁ ସୁଖ ସମସ୍ତଙ୍କର ସବୁଦିନ ରହେ ନାହିଁ । ନାଗରାଇ ପ୍ରକୃତରେ ଜଣେ ସାଧାରଣ ନାଗ ନୁହଁ । ପ୍ରକୃତରେ ସେ ନାଗରାଜା । ତାର ରାଣୀ ବହୁତ । ଯେଉଁ ପୋଖରୀ କୂଳରୁ ସେ ଆସିଥିଲା, ସେଠି ତାର ଉଆସ । ସେଇଠି ସେ ତାର ରାଣୀମାନଙ୍କ ସହ ରହୁଥିଲା ।

ମଣିଷ ରୂପରେ ନାଗରାଇ ଏଣେ ବହୁତ ଦିନ ରହିଗଲା । ତେଣେ ନାଗରାଇର ଅନୁପସ୍ଥିତି ସବୁ ରାଣୀମାନଙ୍କୁ ବାଧିଲା । ସେମାନେ ନାଗରାଇ ବିଷୟରେ ବ୍ୟାକୁଳ । କିନ୍ତୁ ତାର ଖବର କିଛି ମିଳୁ ନଥାଏ ।

ଦିନେ ଗୋଟିଏ ନାଗ ଆସି ଖବର ଦେଲା— ନାଗରାଇ ମଣିଷ ରୂପରେ ରାଜଜେମାକୁ ବିବାହ କରି ଏକ ନଅରରେ ଅଛି । ଏକଥା ଶୁଣି ନାଗ ରାଣୀମାନେ ଈର୍ଷାରେ ଜଳିଗଲେ । ନାଗରାଇକୁ ପୁଣି ଫେରାଇ ନେବାକୁ ସ୍ଥିର କଲେ । କଥା ହେଲା— ପୂର୍ବ କଥା ସବୁ ନାଗରାଇକୁ ଦେଖାଇ ଦିଆଯାଉ । ତଥାପି ନାଗରାଇ ଯଦି ନ ଫେରେ, ତାକୁ ଫେରାଇ ଆଣିବାପାଇଁ ଅନ୍ୟ ବ୍ୟବସ୍ଥା ହେବ ।

ସେଇଦିନ ଜଣେ ରାଣୀ ପଦାକୁ ଚାଲିଆସିଲା । ନାଗରାଇ ଉଆସ ପାଖରେ ପହଞ୍ଚି ସେଠାରେ ଅପେକ୍ଷା କଲା । ନାଗରାଇ ନଥିବା ବେଳେ ସେ ରୁପାବିକାଳି ହୋଇ ରୁପା ଜିନିଷ ବିକିବାକୁ ଆରମ୍ଭ କଲା । ତାର ରୁପା ଜିନିଷରେ ସୁନ୍ଦର ତାରକସି କାମ ହୋଇଥାଏ । ଏହା ଭାରି ଶସ୍ତା । ଏ ଖବର ହିମାଲ ପାଖରେ

ପହଞ୍ଚିଗଲ୍ । ହିମାଳ ରୁପା ବକାଳୀକୁ ଡକାଇ ନେଲା । ତା'ଠାରୁ ବହୁତ ଭଲ ଭଲ ଜିନିଷ କିଣିଲ୍ । ସେ ସବୁ ଜିନିଷ ଭିତରେ ନାଗରାଇ ବ୍ୟବହାର କରୁଥିବା କପ୍‌ଟିଏ ନାଗରାଣୀ ହିମାଳକୁ ଦେଇଦେଲ୍ ।

ଏପରି ସୁନ୍ଦର ସୁନ୍ଦର ତାରକସି କାମର ରୁପା ଜିନିଷ ଦେଖିଲେ ନାଗରାଇ ଖୁବ୍ ଖୁସି ହେବ । ଏଇଆ ଭାବି ହିମାଳ ନାଗରାଇର ବାଟକୁ ଚାହିଁ ବସିରହିଲ୍ । ସେଦିନ ନାଗରାଇ ଫେରୁ ଫେରୁ ପ୍ରାୟ ସନ୍ଧ୍ୟା । ନାଗରାଇ ପହଞ୍ଚିବା ମାତ୍ରେ ହିମାଳ ରୁପା ଜିନିଷତକ ତାକୁ ଦେଖାଇଲ୍ । ନାଗରାଜ୍ୟରେ ତାର ବ୍ୟବହୃତ କପ୍‌ଟି ଦେଖି ସେ ଜାଣିନେଲା ଯେ, ନାଗରାଣୀମାନେ ଏଠି ଆସି ପହଞ୍ଚି ଗଲେଣି । ସେ ହିମାଳକୁ ପ୍ରଶଂସା କଲ୍ ନାହିଁ । ବରଂ ଗମ୍ଭୀର ହୋଇ କହିଲା—"ଏମିତି ଜିନିଷ ଆଉ ରୁପା ବକାଳୀଠାରୁ କିଣିବ ନାହିଁ ।"

ନାଗରାଇର ଏପ୍ରକାର ବ୍ୟବହାରରେ ହିମାଳ ସନ୍ତୁଷ୍ଟ ହୋଇପାରିଲ୍ ନାହିଁ । ବରଂ ମନେ ମନେ ରାଗିଗଲ୍ ।

ଆଉ ଦିନକର କଥା । ଗୋଟିଏ ବାଉଳୀ ଉଆସକୁ ଆସି ହିମାଳକୁ ଦେଖାକଲ୍ । ସେ ଆପତ୍ତିକର କହିଲା—"ନାଗ କୂଳରେ ମୋର ଜନ୍ମ । ନାଗରାଇ ମୋର ସ୍ୱାମୀ । ସେ ମୋ ସାଥିରେ ରହୁଥିଲେ । ମୋତେ ଛାଡ଼ି ଦେଇ ଦିନେ ପଳାଇ ଆସିଲେ । ଶୁଣିଲି, ସେ ଏଠି ରହୁଛନ୍ତି । ତାଙ୍କୁ ଏଠୁ ବିଦା କରିଦେଲେ ସେ ମୋ ପାଖକୁ ଚାଲିଯିବେ ।

ହିମାଳ କହିଲା—"ନାଗରାଇ ବିଷୟରେ ତୁମେ ଭୁଲ୍ କହୁଛ । ସେ ନାଗ ଜାତିର ନୁହନ୍ତି । ସେ ଜଣେ ବ୍ରାହ୍ମଣ । ମୁଁ ତାଙ୍କୁ ବିବାହ କରିଛି । ସେ ମୋର ସ୍ୱାମୀ ।"

ବାରବୁଲଟି କହିଲା—"ତୁମକୁ ନାଗରାଇ ବୋକା ବନାଇ ଦେଇଛନ୍ତି । ଯଦି ତୁମେ ଭାବୁଛ ଯେ ସେ ବ୍ରାହ୍ମଣ, ତେବେ ଅନନ୍ତ-ନାଗଙ୍କ ପୁଷ୍କରିଣୀରେ ତାଙ୍କୁ ହଲପ କରାଅ । ଦେଖିବ ସେ କେବେ ହେଲେ ରାଜି ହେବେ ନାହିଁ ।"

ସନ୍ଦେହର ମଞ୍ଜି ଥରେ ବୁଣା ହେଲେ, ତାହା ବଢ଼ି ବଢ଼ି ଯାଏ । ହିମାଲ ବାରବୁଲ କଥା ବିଶ୍ୱାସ କଲା ନାହିଁ ସତ, କିନ୍ତୁ ମନରେ ତାର ସନ୍ଦେହ ଆସିଲା । ଯଦି ନାଗରାଇ ପ୍ରକୃତରେ ବ୍ରାହ୍ମଣ ତେବେ ବାରବୁଲର ଏକଥା କହିବାରେ କି ତାତ୍ପର୍ଯ୍ୟ ଅଛି ? ନାଗରାଇ ଆସିବା ପରେ ସେ ତାଙ୍କୁ ଏସବୁ କଥା କହିଲା ।

ରାଣୀ ସାପମାନେ ଏଠି ଆସି ଯେ ମେଳା ବାନ୍ଧିଲେଣି ସେଥିରେ ନାଗରାଇର ସନ୍ଦେହ ନଥିଲା । ସେ ଜାଣେ, ହିମାଲ ସରଳ । ସେମାନଙ୍କ ପାଲରେ ପଡ଼ିଯିବା ସ୍ୱାଭାବିକ । ତାକୁ ବୁଝାଇଲେ ବି ସହଜରେ ସେ ବୁଝିବ ନାହିଁ । ନାଗରାଇ ସ୍ଥିର କଲା—ହିମାଲକୁ କିଛି କହିବ ନାହିଁ । ତା'ପରେ ସେ ଟିକିଏ ବିରକ୍ତ ହୋଇ କହିଲା—"ବାଜେ କଥା ଶୁଣିଲେ ମନ ବିଗିଡ଼ିଯାଏ । ସେସବୁ କଥା କମା କାନରେ ପୂରାଅ ନାହିଁ ।"

ଦିନକୁ ଦିନ ହିମାଲର ସନ୍ଦେହ ବଢ଼ିବାକୁ ଲାଗିଲା । ଦିନେ ସେ ନାଗରାଇକୁ କହିଲା—"ତୁମେ ତ ବ୍ରାହ୍ମଣ । ଅନନ୍ତ ନାଗଙ୍କୁ ବିଶ୍ୱାସ କର । ତାଙ୍କ ପୋଖରୀରେ ପଶି ବ୍ରାହ୍ମଣ ବୋଲି କହିଲେ ତୁମର ଅସୁବିଧା କ'ଣ ? ବରଂ ଏତିକି କହିଦେଲେ ମୋର ସନ୍ଦେହ ତୁଟିଯିବ ।"

ନାଗରାଇ ହିମାଲ ମୁହଁକୁ ଖାଲି ଚାହିଁରହିଲା—କ'ଣ କହି ତାକୁ ଯେ ସେ ସନ୍ତୁଷ୍ଟ କରିବ, ସେକଥା ସେ ଭାବିପାରିଲା ନାହିଁ । ଶେଷକୁ ହିମାଲ କଥାରେ ସେ ରାଜି ହୋଇଗଲା ।

ଦିନେ ହିମାଳ ଓ ନାଗରାଇ ଅନନ୍ତନାଗଙ୍କ ପବିତ୍ର ପୁଷ୍କରଣୀକୁ ଗଲେ । ସେଠି କି ନାଗରାଇ ପାଣିରେ ପଶିବାକୁ ରାଜି ନଥିଲା । ବିକଳ ନୟନରେ ସେ ହିମାଳକୁ ଚାହିଁ ରହିଲା । ହିମାଳ ତାକୁ ପାଣିରେ ପଶିବାକୁ ବାଧ୍ୟ କଲା । ଯେମିତି ନାଗରାଇ ପାଣିରେ ପଶିଛି, ତାର ସ୍ୱାମୀମାନେ ତାକୁ ଟାଣିନେଲେ । ନାଗରାଇ ପାଣି ଭିତରେ କୁଆଡ଼େ ଗଲା, ହିମାଳ ଜାଣିପାରିଲା ନାହିଁ । ହିମାଳ ଲୋକ ଲଗାଇ ପୋଖରୀ ଭିତରେ ଖୁବ୍ ଖୋଜାଇଲା । କିନ୍ତୁ ତାର କିଛି ସନ୍ଧାନ ମିଳିଲା ନାହିଁ ।

ଶେଷକୁ ହିମାଳ କାନ୍ଦି କାନ୍ଦି ଘରକୁ ଫେରି ଆସିଲା । ସେଇଦିନୁ ସେ ସବୁବେଳେ ଭଗବାନଙ୍କୁ ପ୍ରାର୍ଥନା କରେ । ଦୁଃଖୀ ଦରିଦ୍ରଙ୍କୁ ଭିକ୍ଷା ଦିଏ । ଏମିତି ଭାବରେ ଦିନଗୁଡ଼ିକୁ ସେ କଟାଇ ଦିଏ ।

ଦିନେ ଭିକ୍ଷା ଦେଉ ଦେଉ ଜଣେ ବାବାଜୀ ହିମାଳକୁ ସମ୍ବର୍ଦ୍ଧନା ଜଣାଇ କହିଲେ—"ଆଲୋ ମା, ମୁଁ ଦିନେ ଅନନ୍ତ ନାଗଙ୍କ ପୋଖରୀ ବାଟେ ଯାଉଥିଲି । ରାଜ ପୋଷାକ ପିନ୍ଧି ଜଣେ ଯୁବକ ପାଣିରୁ ବାହାରିଲା । ହାତରେ ତାର ଥାଳଟିଏ । ବହୁ ସୁଖାଦ୍ୟ ସେଥିରେ ଥିଲି । ସେ ଥାଳଟିକୁ ଗୋଟିଏ ଗଛ ମୂଳରେ ରଖି କହିଲା—"ହେ ପ୍ରିୟ ହିମାଳ, ତୋ ପାଇଁ ଏ ଖାଦ୍ୟ ଉତ୍ସର୍ଗ କରୁଛି ।"

ହିମାଳ ଭାବିଲା—ବାବାଜୀଙ୍କର କଥା ଯଦି ସତ୍ୟ, ସେ ରାଜପୁରୁଷ ଯେ ନିଶ୍ଚୟ ନାଗରାଇ, ଏଥିରେ ସନ୍ଦେହର ଅବକାଶ ନାହିଁ । କଥାର ସତ୍ୟତା ଜାଣିବାପାଇଁ ସେଦିନ ରାତିରେ ସେ ଅନନ୍ତନାଗଙ୍କ ପୋଖରୀ ପାଖକୁ ଗଲା । ସେଇଠି ଏକା ଏକା ଅପେକ୍ଷା କଲା । ଆଖିରେ ଟିକିଏ ପଲକ ବି ପକାଇଲା ନାହିଁ ।

ସେତେବେଳକୁ ଅଧ ରାତି । ନାଗରାଇ ଆସ୍ତେ ଆସ୍ତେ ପୋଖରୀରୁ ଉଠି ଆସି ଗଛ ପାଖକୁ ଯିବାକୁ ବାହାରିଛି, ହିମାଲ ତାର ପାଦ ତଳେ ପଡ଼ିଯାଇ ତା' ଗୋଡ଼କୁ ଜାବୁଡ଼ି ଧରିଲା । କାନ୍ଦି କାନ୍ଦି ସେ କହୁଥାଏ—"ସବୁ ଭୁଲ ମୋର, ମୋତେ କ୍ଷମା କର । ମୋତେ ତୁମ ସାଥିରେ ନେଇଯାଅ । ନହେଲେ ମୁଁ ପ୍ରାଣ ହାରି ଦେବି ।"

ନାଗରାଇ ହିମାଲକୁ ଏ ଅବସ୍ଥାରେ ଦେଖିବ ବୋଲି କଳ୍ପନା ବି କରିନଥିଲା । ସେ ଜାଣେ ଯେ, ହିମାଲକୁ ସାଥିରେ ନେଲେ ନାଗ ସ୍ତ୍ରୀମାନେ ତାକୁ ମାରି ପକାଇବେ । ତେଣୁ ହିମାଲକୁ ସେ ବହୁତ ବୁଝାଇଲା । କିନ୍ତୁ ସେ ଦେଖିଲା ହିମାଲ ତାକୁ ଛାଡ଼ିବାକୁ ଏକଦମ୍ ନାରାଜ । ତାର ଆଉ ଉପାୟ ନଥିଲା । ହିମାଲକୁ ସେ ଗୋଟିଏ ସାପ କରିଦେଲା । ତାକୁ ଧରି ପୁଣି ସେ ଉଆସକୁ ଗଲା ।

ନାଗରାଣୀମାନେ ତାର ଚାରିପଟେ ଘେରିଯାଇ ପଚାରିଲେ—"ମଣିଷ ମାଂସ ବାସ୍ନା ଆସୁଛି କିପରି ?"

ନାଗରାଇ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲା । ସେମାନେ କିନ୍ତୁ ବୁଝିଲେ ନାହିଁ । ନାଗରାଇ ବାଧ୍ୟ ହୋଇ ହିମାଲକୁ ମଣିଷ କଲା । ବହୁ ପ୍ରବର୍ଣ୍ଣନା ପରେ ନାଗରାଣୀମାନେ ହିମାଲକୁ ସେମାନଙ୍କ ସାଥିରେ ରଖିବାକୁ ରାଜି ହେଲେ ।

ନାଗରାଇ ଥିଲେ ହିମାଲର ଦୁଃଖ ନଥାଏ । ସେ କୁଆଡ଼େ ଗଲାପରେ ସାପ ସ୍ତ୍ରୀମାନେ ତାକୁ ବହୁତ ଗଞ୍ଜଣା ଦିଅନ୍ତି । ତାକୁ ସବୁଠାରୁ ବେଶୀ ଓ ଭାରି କାମ କରାନ୍ତି । ଅଳ୍ପ ଗଣ୍ଡାଏ ଖାଇବାକୁ ଦିଅନ୍ତି । ତଥାପି କେଉଁଥିରେ ହିମାଲର ଆପତ୍ତି ନଥାଏ । ନାଗରାଇ ପାଖରେ ଖାଲି ରହୁଛି ବୋଲି ତାର ଶାନ୍ତି ଆଉ ସୁଖ । ସେଥିରେ ସେ ସନ୍ତୁଷ୍ଟ ।

ଥରେ ସେ ଦୁଧ ଗରମ କରୁଥାଏ । ସାପ ଛୁଆମାନେ ଦୁଧ ପିଇବାକୁ ଅଡ୍ଡ଼ି କଲେ । ସେ ଯେତେ ବୁଝାଇଲା, ସେମାନେ ମାନିଲେ ନାହିଁ । ଗରମ ଦୁଧ ପିଇବାକୁ ଲାଗିଲେ । କିନ୍ତୁ ଗରମ ଦୁଧ ପିଇ ସେମାନଙ୍କ ତଣ୍ଟି ପୋଡ଼ିଗଲା । ସେମାନେ ସମସ୍ତେ ମରିଗଲେ । ପିଲାମାନେ ମରିଯିବା ଦେଖି ନାଗରାଣୀମାନେ ତାକୁ ବାରମ୍ବାର ଦଂଶନ କଲେ । ସାଙ୍ଗେ ସାଙ୍ଗେ ହୀମାଲର ପ୍ରାଣବାୟୁ ଉଡ଼ିଗଲା ।

ହୀମାଲର ମୃତ୍ୟୁ ନାଗରାଇ ପକ୍ଷେ ଏକ ଦାରୁଣ ଆଘାତ । ସେ ଜାଣେ ଯେ, ହୀମାଲର କିଛି ଦୋଷ ନାହିଁ । ଅଥଚ, ସମସ୍ତେ ତା’ ସାଙ୍ଗେ ଦାଉ ସାଧିଲେ । ସେ ଦୁଃଖରେ ଭାଙ୍ଗି ପଡ଼ିଲା । ହୀମାଲର ମୃତ ଶରୀରକୁ ଧରି ସେ ପୋଖରୀରୁ ବାହାରି ଆସିଲା । ତାକୁ ଗୋଟିଏ ଗଛ ତଳେ ଶୁଆଇ ଦେଲା । ସବୁଦିନ ନାଗରାଇ ଆସେ । ମୃତ ଶରୀର ପାଖରେ ବସେ । ବହୁତ କାନ୍ଦେ ।

ଦିନେ ଜଣେ ସାଧୁ ସେଇ ବାଟରେ ଯାଉଥିଲେ । ଅପୂର୍ବ ସୁନ୍ଦରୀ ଝିଅଟିର ମୃତ ଶରୀର ଦେଖି ଅଟକି ଗଲେ । କିଛି ଲତାର ପତ୍ର ଆଣି ରସ କଲେ । ତାକୁ ହୀମାଲ ପାଟିରେ ଦେଲେ । ଆଶ୍ଚର୍ଯ୍ୟ ! ହୀମାଲ ବଞ୍ଚି ଉଠିଲା । ତାକୁ ସାଥିରେ ନେଇ ସେ ଆଶ୍ରମକୁ ଚାଲିଗଲେ ।

ସବୁଦିନ ପରି ସେଦିନ ବି ନାଗରାଇ ଗଛ ମୂଳକୁ ଆସିଲା । ହୀମାଲର ଶବ ନଦେଖି ସେ କାନ୍ଦି ପକାଇଲା । ତାର ସନ୍ଧାନପାଇଁ ଚର ପଠାଇଲା ।

ଋଷିଙ୍କ ଆଶ୍ରମରେ ହୀମାଲ ଯେ ରହୁଛି, ତାକୁ ଅଛପା ରହିଲା ନାହିଁ । ହୀମାଲକୁ ଦେଖା କରିବାକୁ ସେ ଆଶ୍ରମକୁ ଗଲା । ସେଠି ପହଞ୍ଚିଲାବେଳକୁ ହୀମାଲକୁ ନଦୋଡ଼ି ନଦ । ତାକୁ ଆଶ୍ଚର୍ଯ୍ୟ

କରିବାପାଇଁ ସେ ଚେକା ବାନ୍ଧି ତା' ପାଖେ ଶୋଇଗଲା ।

କିଛି ସମୟ ପରେ ଋଷିଙ୍କର ଜଣେ ଶିଷ୍ୟ କୌଣସି କାମରେ ସେ ଘରକୁ ଆସିଲେ । ହିମାଲ ପାଖରେ ସାପଟିଏ ଶୋଇଥିବାର ଦେଖି ସେ ଗୁନିଆ । ବାଡ଼ିଟିଏ ଆଣି ସାପକୁ ପିଟିବାକୁ ଲାଗିଲେ । ମୁହୂର୍ତ୍ତିକ ମଧ୍ୟରେ ସବୁ ଶେଷ । ସାପକୁ ସେ ଖାଲି ମାରିଲେ ନାହିଁ, ମୁଣ୍ଡ ତାର ଛେଚେଇ କରିଦେଲେ ।

ସାପକୁ ପିଟିବା ଶବ୍ଦରେ ହିମାଲର ନିଦ ଭାଙ୍ଗିଗଲା । ନାଗରାଇକୁ ଋଷିଙ୍କ ଶିଷ୍ୟ ମାରି ସାରିବାର ଦେଖି ସେ ଖୁବ୍ କାନ୍ଦିଲା । ସବୁକଥା ସେ ଋଷିଙ୍କ ଆଗରେ କହିଲା । ତା'କଥା ଶୁଣି ଆଶ୍ରମବାସୀ ସମସ୍ତ ଦୁଃଖରେ ଭାଙ୍ଗି ପଡ଼ିଲେ ।

ସମସ୍ତେ ମିଶି ମୃତ ସାପକୁ ଶ୍ମଶାନକୁ ନେଲେ । ସେଠାରେ ଗୋଟିଏ ଚିତା ସଜଡ଼ା ହେଲା । ସେଥିରେ ମୃତ ସାପକୁ ଶୁଆଇ ଅଗ୍ନି ସଂଯୋଗ କରାଗଲା ।

ହିମାଲକୁ ଚାରିଆଡ଼ ଅନ୍ଧାର ଦେଖାଗଲା । ନାଗରାଇ ବ୍ୟତିରେକେ ଯେ ଏ ସଂସାର ତା' ପ୍ରତି ଅତ୍ୟନ୍ତ ଦୁର୍ବିସହ । ତାର ଆଉ ବଞ୍ଚିରହିବା ଅନାବଶ୍ୟକ । ସେ କଥା ସେ ନିଜେ ଅନୁଭବ କଲା । ତା'ଛଡ଼ା ସେ ଭାବିଲା ତାକୁ ସଂଖୋଜିବାକୁ ଆସି ତାର ସ୍ୱାମୀ ମରିଛନ୍ତି । ସେଥିପାଇଁ ସେହିଁ ଦାୟୀ । ଏକଥା ସେ ଯେତିକି ଯେତିକି ଭାବିଲା ସଂସାର ପ୍ରତି ତାର ବିତୃଷ୍ଣା ସେତିକି ସେତିକି ବଢ଼ିଗଲା । ନିଜକୁ ସେ ଆଉ ସମ୍ଭାଳି ପାରିଲା ନାହିଁ । ସ୍ୱାମୀ ଚିତାକୁ ଡେଇଁ ପ୍ରାଣ ବିସର୍ଜନ କରିଦେଲା ।

କିଛି ସମୟ ପରେ ହିମାଲ ଓ ନାଗରାଇ ପୋଡ଼ି ପାଉଁଶ ହୋଇଗଲେ ।

ଦୈବବାଣୀ ହେଲା—“ଏ ଚିତାଭସ୍ମକୁ ଅନନ୍ତ ନାଗଙ୍କ

ପୋଖରୀରେ ପକାଇଦିଅ । ସେମାନେ ପୁନର୍ଜୀବନ ପାଇବେ ।"

ଋଷି ଚିତାଭସ୍ମକୁ ନେଇ ଅନନ୍ତ ନାଗଙ୍କ ପୋଖରୀରେ ପକାଇ ଦେଲେ । ସତକୁ ସତ, ନାଗରାଇ ଓ ହିମାଲ ଜଳ ଭିତରେ ସାପ ରୂପରେ ଦେଖାଦେଲେ । ସେମାନେ ସେଠାରେ ଖୁସିରେ ରହିଲେ ।

୯

# ଧନୀ ସୌଦାଗର

କାଶ୍ମୀରର ରାଜଧାନୀ ଶ୍ରୀନଗର । ଏହା ଏକ ବଡ଼ ସହର । ବହୁଦିନ ତଳେ ଏଠାରେ ଜଣେ ଧନୀ ସୌଦାଗର ରହୁଥିଲା ।

ତା'ର ଘର ଖୁବ୍ ବଡ଼ । ଆଗପଟେ ପେସ୍ତା ବାଦାମ ଗଛର ବଗିଚା । ପଛ ପଟେ ପରିବା କିଆରୀ । ଘରପାଖକୁ ଲଗି କାଠର ଶସ୍ୟାଗାର । ବର୍ଷକର ଖାଦ୍ୟଶସ୍ୟ ସେଇଠି ସାଇତା ହୁଏ । ହତା ଚାରିପଟେ ବିରାଟ ପ୍ରାଚୀର । ଭିତରକୁ କାହାର ପ୍ରବେଶ କରିବାର ସୁବିଧା ବି ନାହିଁ ।

ବସନ୍ତଋତୁରେ ତାର ଘର ହସେ । ଘରର ଛାତ ତ ମାଟି । ସେଇଠି ଲତା ସବୁ ମାଡ଼ିଯାଏ । ସେଥିରେ ନାନାରକମର ଫୁଲ ଫୁଟେ । ଛାତଟି ଫୁଲରେ ପୁରି ଯାଇ ହୋଇଯାଏ । ପେସ୍ତା ବାଦାମ ଫୁଲ ତ ଧଳା । ଖୁବ୍ ସୁନ୍ଦର । ସେ ଫୁଲରେ ଘରର ଆଗପଟେ ଉଜ୍ଜ୍ୱଳ ଦିଶେ । ପରିବା କିଆରିରେ ବିଭିନ୍ନ ପ୍ରକାର ପରିବା ପୂରିଯାଏ । ଚାରିପଟ ପାଚେରୀ ଦେହରେ ତ ଲତା ଛନ୍ଦି ହୋଇଯାଏ, ତେଣୁ ସେଥିରେ ଫୁଲଫୁଟି ଦୂରକୁ ଗୋଟିଏ ଫୁଲର ପାଚେରୀ ପରି ଦେଖାଯାଏ । ଏ ପରିବେଶ ମଧୁର, ସୁନ୍ଦର ଓ ପ୍ରଶାନ୍ତ । ଯେକୌଣସି ମଣିଷ ଏଥିରେ ଆତ୍ମହରା ହୋଇଯିବ । କିନ୍ତୁ ସଂସାରରେ ସବୁ

ବିଚିତ୍ର । ସବୁ ଅସାମଞ୍ଜସ୍ୟ । ଏ ପରିବେଶ ଭିତରେ ରହି ବି ଏ ଘରର ମାଲିକ ସୌଦାଗର ମୋଟେ ଭଲମଣିଷ ନଥିଲା । ପରିବେଶର ଗୁଣ ତା' ଉପରେ ଟିକିଏ ବି ପଡ଼ିନଥିଲା । ସେ ଥିଲା ମାଡମନା, କୁଟିଳ, ଜଟିଳ ଓ କୃପଣ ।

କାଶ୍ମୀରର ଲୋକେ ଭାରି ଦରିଦ୍ର । ଅଭାବୀ । ପରଦୁଆରେ ଚାକିରି କରି ଚଳଯାଆନ୍ତି । ତେଣୁ ଧନୀ ସୌଦାଗର ପାଖରେ ବହୁତ ଲୋକ ଚାକିରି କରିବାକୁ ଜୁଟନ୍ତି । ଧନୀ ସୌଦାଗର ତାରି ସୁବିଧା ନିଏ । ଚାକିରିପାଇଁ ସର୍ତ୍ତ ବାଢ଼େ । ସେ କହେ — "ମୁଁ ଭାରି ଶାନ୍ତଶିଷ୍ଟ । ମୋତେ ଗଣ୍ଡଗୋଳ ଭଲ ଲାଗେନାହିଁ । ମୋର ଶାନ୍ତି ଦରକାର । ଯେ ମୋ ଘରେ ରହିବ, ସେ ଭଲରେ ରହୁ ମୁଁ ଚାହେଁ । ସେଥିପାଇଁ ପ୍ରଚଳିତ ଦରମା ହାରର ଦୁଇଗୁଣ ଦରମା ଦେବାକୁ ମୁଁ ରାଜି । କିନ୍ତୁ ମୋର ଗୋଟିଏ ସର୍ତ୍ତ—ମୋ ଘରେ ଚାକିରି କାଳରେ ଯଦି ସେ ଥରେ ରାଗେ ମୁଁ ତାର ନାକ କାଟି ଦେବି ।"

ଚାକିରିର ସର୍ତ୍ତ ଅମାନୁଷିକ, ବର୍ବର ଓ ନିଷ୍ଠୁର ହେଲେ ବି ଚାକର ବେଶ ଜୁଟନ୍ତି । କାରଣ କାଶ୍ମୀରରେ ଚାକିରି ମିଳେ ନାହିଁ । ଯାହା ମିଳେ ଅତି କମ ଦରମାରେ । ଏଣୁ ଧନୀ ଲୋକ ପ୍ରଚଳିତ ଦରମାର ଦୁଇଗୁଣ ଦେଉଥିବାରୁ ସବୁବେଳେ ତା' ଦୁଆର ମୁହଁରେ ଲୋକଙ୍କର ଗହଳି । ସମସ୍ତେ ଚାକିରି ଆଶାରେ ସେଠି ଜୁଟନ୍ତି । କିନ୍ତୁ ଧନୀ ସୌଦାଗର ତାଙ୍କୁ ଦରମା ଦିଏ ନାହିଁ । କିଛିଦିନ ପରେ ଚାକରକୁ ସେ କୌଣସି ନା କୌଣସି କାରଣରୁ ରଗାଇବାକୁ ଚେଷ୍ଟା କରେ । ଯଦି ସେ ରାଗେ, ତା'ର ଖାଲି ନାକ କାଟେ ନାହିଁ, ବାକି ଦରମା ବି ଦିଏ ନାହିଁ । ତାର ଚାକିରିରୁ ବାହାର କରିଦିଏ । କେତେ ଯେ ଚାକର ନାକ କଟା ହୋଇ

ତା'ପାଖରୁ ଗଲେଣି, ତାର ସୀମା ନାହିଁ ।

ଥରେ କାଶ୍ମୀରରେ ମରୁଡ଼ି ପଡ଼ିଲା । ଜମିରେ ଫସଲ କିଛି ହେଲା ନାହିଁ । ଗଛରେ ଥିବା ଫଳ ବି ଶୁଖିକରି ଝଡ଼ିପଡ଼ିଲା । ଚାରିଆଡ଼େ ହାହାକାର । ଗାଁ ଗଣ୍ଡା ଗୁଡ଼ିକ ଲୋକେ ପ୍ରାଣ ବିକଳରେ ସହରକୁ ପଳାଇ ଆସିଲେ ।

ଋଷୀଟିଏ । ସମ୍ବଳ ତା'ର କିଛି ନଥିଲା । କିନ୍ତୁ ଘରେ ତା'ର ବହୁତ ଲୋକ । ଏଇ ଅନାଟନ ବେଳେ ସେମାନଙ୍କୁ ତ ଉପାସ ରଖିହେବ ନାହିଁ । ସେମାନଙ୍କୁ ଯେ କୌଣସି ମତେ ଚଳାଇ ନେବାକୁ ହେବ । ସେ ସମ୍ପତ୍ତି ସବୁ ବିକି ଭାଙ୍ଗି ସେମାନଙ୍କୁ ଚଳାଇଲା । ସବୁ ସରିଆସିଲା । ଦେଖିଲା, ଘରେ ବସି ଲାଭନାହିଁ । ହାତ ବଢ଼ାଇବାକୁ ତା'ର ଆଉ କିଛି ନଥିଲା । ଶେଷକୁ ପିଲାଛୁଆଙ୍କୁ ବଞ୍ଚାଇବା ପାଇଁ ସହରକୁ ଚାକରିପାଇଁ ଆସିଲା ।

ସେ ଦେଖିଲା—ସହରରେ ଚାକରି ମିଳିବା ବି କଷ୍ଟ । ଯାହା ହେଉ, ସେ ବୁଲି ବୁଲି ଧର୍ମ ସୌଦାଗର ପାଖରେ ପହଞ୍ଚିଗଲା । ସେତିକି ବେଳେ ଧର୍ମ ସୌଦାଗର ଜଣେ ଚାକରର ନାକ କାଟିବାରେ ବ୍ୟସ୍ତ ଥିଲେ । ଏପରି ଏକ ଅମାନୁଷିକ କାର୍ଯ୍ୟ ଦେଖି ବିଚରା ଋଷୀଟି ଶଙ୍କିଗଲା । କିନ୍ତୁ ଉପାୟହୀନ ସେ । ଅନ୍ୟ କୌଣସିଠାରେ ଚାକରି ମିଳିବାର ସମ୍ଭାବନା ବି ନାହିଁ । ଚାକରି ନକଲେ ପିଲାଛୁଆ ଭୋକ ଉପାସରେ ମରିବେ । ଶେଷକୁ ବହୁତ ଭାବି ଚିନ୍ତି ଧର୍ମ ସୌଦାଗର ସାଥିରେ କଥାବାର୍ତ୍ତା କରିବାକୁ ସେ ଅପେକ୍ଷା କଲା ।

ଜଣକ ନାକଟି ଫିଙ୍ଗି ଦେଇ ଧର୍ମ ସୌଦାଗର ଋଷୀଟିକୁ ଭିତରକୁ ଡାକିଲା । ଋଷୀଠାରୁ ତାର ଦୁଃଖ ଶୁଣି ସାରିବା ପରେ ଧର୍ମ ସୌଦାଗର କହିଲା—"ତୁମକୁ ଦେଖି ମୋର ମମତ

ହୋଇଛୁ । ତୁମକୁ ଚାକଣ ଦେବାକୁ ମୋର ଖୁବ ଇଚ୍ଛା । କିନ୍ତୁ ମୋର ଚାକରୀ ସର୍ତ୍ତ ଅଛି । ତା’ପରେ ତାର ସର୍ତ୍ତସବୁ ବିଷଦ ଭାବରେ ବୁଝାଇଲା ।

ଗୃଷୀଟି ଏସବୁ କଥା ଶୁଣି ଆଶ୍ଚର୍ଯ୍ୟ । ଚାକରୀ ପାଇଁ ଯେ ଏପରି ସର୍ତ୍ତ ରହିପାରେ, ସେକଥା ସେ ତାର କାନଉଟିଲି କିନୁ ଶୁଣି ନଥିଲା । ତଥାପି ସେ ଯେଉଁ ଅବସ୍ଥାରେ ଅଛି, ଏଠା ଛାଡ଼ିଲେ ଚାକରୀ ଆଉ ମିଳିବ ନାହିଁ । ଏକଥା ଭାବି ସେ ହଁ ଭରିଲା ।

ଗୃଷୀଟିର ପ୍ରଥମେ ପ୍ରଥମେ କିଛି ଅସୁବିଧା ହେଉନଥିଲା । କିନ୍ତୁ ଗୃଷୀ କେବେହେଲେ ବିଦେଶ ଯାଇନଥିଲା । ପିଲା ଝିଅଙ୍କୁ ଛାଡ଼ି ପ୍ରଥମଥର ପାଇଁ ସେ ବିଦେଶ ଆସିଛି । ତେଣୁ ସେମାନଙ୍କ କଥା ସବୁବେଳେ ତାର ମନେ ପଡ଼େ । ତାକୁ ଖୁବ ଅସ୍ୱସ୍ତି ଲାଗେ । ସେଥିପାଇଁ ବିନା କାରଣରେ ସେ ଚିଡ଼ି ଉଠେ । ମାଲିକ ଘରେ ଭଲ ବ୍ୟବହାର ପାଇବାରୁ ଚାକରୀ ସର୍ତ୍ତ ସେ ପୁରାପୁରି ଭୁଲିଗଲା । ଘରେ ଯେମିତି ସାଧାରଣତଃ ଚାକରମାନେ ଚଳନ୍ତି, ସେ ସେମିତି ଚଳେ । ବିନା ସଙ୍କୋଚରେ ମାଲିକ ସାଥିରେ ଦୁଃଖ ସୁଖ ହୁଏ । ଦିନେ ମାଲିକଙ୍କୁ ରାଗିକରି ପଦେ ଗୃଷୀଟି କହିଦେଲା । ମାଲିକ ଆଉ ଡେରି କଲା ନାହିଁ । ଗୃଷୀକୁ ମାଡ଼ିବସି ତାର ନାକ କାଟିଦେଲା ।

ଗୃଷୀଟି ବିଚରା କରେ କ’ଣ ? ନାକକଟା ହୋଇ ସେ କୁଆଡ଼େ ଯିବ, ସେ ଜାଣିପାରିଲା ନାହିଁ । ଏ ଅବସ୍ଥାରେ ଦାଣ୍ଡରେ ଯିବାକୁ ତାକୁ ଲାଜମାଡ଼ିଲା । ଉପାୟ ନାହିଁ । ସେ ଭାବିଲା— ଘରକୁ ପଳାଇଲେ ରକ୍ଷା । ସେଇ ଗୋଟିଏ ଜାଗା, ଯାହା ଭୁଲ କଲେ ବି ସେଠି ଓଜନ ହୁଏନାହିଁ । ଦୋଷ ଦୁର୍ବଳତାର ବିଗ୍ରର ନଥାଏ । ସେଠି ଖାଲି ସହାନୁଭୂତି, ସ୍ନେହ ଶ୍ରଦ୍ଧା ପୂରି ରହିଛି ।

ଦୁଃଖରେ ଅଂଶୀଦାର ସେଠି ବହୁତ । ଗୃଷୀଟି ଘରକୁ ଫେରିଯିବାକୁ ବାହାରି ପଡ଼ିଲା ।

ବାଟରେ ଯାଉ ଯାଉ ଜଣେ ବନ୍ଧୁଙ୍କ ସାଥିରେ ତାର ଦେଖା ହେଲା । ସେ ଗୃଷୀଟି ଜଣେ ନିରୀହ ସରଳ ଲୋକ । ଏକଥା ତା ଅଞ୍ଚଳରେ ସମସ୍ତଙ୍କର ଧାରଣା । ତେଣୁ ତାକୁ ସେ ଏପରି ଅବସ୍ଥାରେ ଦେଖି ବନ୍ଧୁଜଣକ ଆଶ୍ଚର୍ଯ୍ୟ ହୋଇଗଲେ । ତାର ନାକ କାହିଁକି ଓ କପରି କଟା ହେଲା, ସେ କଥା ବନ୍ଧୁ ଜଣକ ଜାଣିବାକୁ ଚାହିଁଲେ । ଗୃଷୀଟିର ତ ପ୍ରାଣ କାନ୍ଦୁଥିଲା । ସେ ଏକା ନିହସକେ ସବୁକଥା ଗୋଟି ଗୋଟି କରି କହିଗଲା । ଏକଥା ଶୁଣି ବନ୍ଧୁଜଣକ ରାଗରେ ନିଆଁ । ବିନା ଦୋଷରେ ଯେ ଜଣେ ଏପରି ଲୋକମାନଙ୍କୁ ହଇରାଣ କରିପାରେ, ସେକଥା ତାକୁ ବହୁତ ବାଧିଲା । ଏହାର ପ୍ରତିକାର ସେ କରିବ ବୋଲି ପ୍ରତିଜ୍ଞା କଲା । ଗୃଷୀଟିକୁ କହିଲା—"ଭାଇ, ସରଳ ନିରୀହ ଲୋକଙ୍କର ସ୍ଥାନ ଏ ସମାଜରେ ନାହିଁ । ଯେ ବଦମାସି କରେ ତାକୁ ଲୋକେ ପ୍ରଶଂସା କରନ୍ତି । ଏକଥାକୁ ବଦଳାଇବାକୁ ହେବ । ମୁଁ ଶପଥ ନେଉଛି, ଏହାର ପ୍ରତିଶୋଧ ନେବି । ତୁ ଆଉ ବ୍ୟସ୍ତ ନହୋଇ ଘରକୁ ଯାଆ ।"

ଗୃଷୀଟିର ବନ୍ଧୁ ତା' ଘରକୁ ଆସିଲା । ଚଳବା ମୁତାବକ କିଛି ଜିନିଷପତ୍ର ଧରି ଘରୁ ବାହାରି ପଡ଼ିଲା । ଲକ୍ଷ୍ୟ ତାର ଧର୍ମ ସୌଦାଗରର ଘର ।

ଗୃଷୀଟି ଗ୍ଲଲିଗଲା ପରେ ସୌଦାଗର ଗୋଟିଏ ଗ୍ଲକର ଅନ୍ୱେଷଣରେ ଥାଏ । ଏତିକିବେଳେ ଗୃଷୀର ବନ୍ଧୁ ସେଠି ପହଞ୍ଚି ଗଲା । ତାକୁ ଦେଖି ଧର୍ମ ସୌଦାଗର ଭାରି ଖୁସି । ସେ ଗ୍ଲକିରୀର ସର୍ତ୍ତ ବାଢ଼ିଦେଲା । ସେ ଜଣେ ଠକ ହାବୁଡ଼େ ପଡ଼ୁଛି, ତାକୁ ତ ମାଲୁମ ନାହିଁ । ତେଣୁ ଏସବୁ ସର୍ତ୍ତରେ ନୂତନ ଗ୍ଲକର ରାଜି କ

ନାହିଁ, ଜାଣିବାକୁ ଚାହିଁଲା ।

ନୂତନ ଚାକର କୌଣସି ଉତ୍ତର ନଦେଇ ମୌନ ରହିବାରୁ ସୌଦାଗରଟି ପୁଣି ତାର ସର୍ତ୍ତଗୁଡ଼ିକ ପ୍ରାଞ୍ଜଳ ଭାବରେ ବୁଝାଇ ଦେଲା । ତାପରେ ପୁଣି ତାର ମତାମତ ପଚାରିଲା । ନୂତନ ଚାକର ଧୀର ଓ ସ୍ଥିର ଭାବରେ କହିଲା—"ମୁଁ ସବୁ ସର୍ତ୍ତରେ ରାଜି । କିନ୍ତୁ ମୁନିବ ଯଦି ମୋ ଉପରେ ରାଗିବେ, ତାଙ୍କୁ କ'ଣ ଏଇ ସର୍ତ୍ତ ଲାଗୁ ହେବ ?"

ଭାବି ଚାକରର କଥାଟା ପ୍ରଥମେ ସୌଦାଗରର ମନ ଉଣା କରିଦେଲା । କିନ୍ତୁ ପର ମୁହୂର୍ତ୍ତରେ ସେ ଭାବିଲା—"ବୋକା ଲୋକଙ୍କର ଆସ୍ପର୍ଦ୍ଧା ବହୁତ । ନବୁଝି ନସୁଝି ସେମାନେ ବଡ଼ ବଡ଼ କଥା କହନ୍ତି । ଏଇଟା ବୋକା ବୋଲି, ମାଲିକ ପାଇଁ ସର୍ତ୍ତବାଢ଼ୁଛି ।" ଏହା ଭାବି ସେ ଆଉ ଲୋକଟାର କଥାରେ ଗୁରୁତ୍ୱ ଦେଲା ନାହିଁ । ରାଜି ବୋଲି ହଁ ମାରିଲା ।

ନୂତନ ଚାକର ସେହି ମୁହୂର୍ତ୍ତରେ କାର୍ଯ୍ୟରେ ଯୋଗ ଦେଲା । କେତେ ମାସ ସୁରୁଖୁରୁରେ ଚାଲିଗଲା । ଚାକରଟି ମହା ହୁସିଆର । ଧୀର ପାଣିରେ ଗୋଡ଼ ଦେବାକୁ ତାର ଡର । ସେ ହାତେ ମାପି ଚାରି ଆଙ୍ଗୁଳ ଚାଲେ । ସେଥିପାଇଁ ସେ ନମ୍ର, ଭଦ୍ର ଓ ବିଶ୍ୱସ୍ତ । ଚାକରର ଏ ଢଙ୍ଗ ଦେଖି ମାଲିକ ଭାରି ଖୁସି । ଚାକର ଉପରେ ତାର ଆଉ ସନ୍ଦେହ ନାହିଁ ।

ଦିନକର କଥା । ସୌଦାଗରର ସ୍ତ୍ରୀ ମାଂସ ତରକାରି ବସାଇ ଥିଲା । ତାର କାମ ପଡ଼ିବାରୁ ସେ ଚୁଲି ପାଖରୁ ଉଠି ଯାଇ ନୂତନ ଚାକରକୁ କହିଲା—"ଚୁଲିରେ ମାଂସ ତରକାରି ବସିଛି । ତୁ ଟିକିଏ ଚୁଲି ପାଖରେ ବସି ଦେଖୁଥା । ମୁଁ ଏଇଠୁ ଆସୁଛି ।"

ସ୍ତ୍ରୀଟି ଚାଲିଗଲା । ଚାକରଟି ଚୁଲି ପାଖରେ ବସିରହିଲା ।

କିନ୍ତୁ ଚାକରାଣୀକୁ ଟିକିଏ ହେଲେ ବାଧା ଦେଲା ନାହିଁ। ଏହା ଭିତରେ ଚାକରାଣୀର ପୋଡ଼ା ଗନ୍ଧ ହେଲା। ପାଣି ମଛ ମାଂସ ସବୁ କଳା ପଡ଼ିଗଲା। ଗୁକରଟି ସେମିତି ଚୁପ୍ ହୋଇ ବସିଥାଏ। ସୌଦାଗର ସ୍ତ୍ରୀ ଆସି ପହଞ୍ଚିଗଲା। ସେ ଦେଖିଲା—ରନ୍ଧା ପାତ୍ର ପୋଡ଼ିକରି କଳା ପଡ଼ିଗଲାଣି। ଆଉ ମାସଂତକ ପୋଡ଼ା ଅଙ୍ଗାର। ଗୁକରଟି କାଠ ପରି ସେଠି ବସିରହିଛି। ସ୍ତ୍ରୀ ଲୋକଟି ଗୁକର ଉପରେ ବିରକ୍ତ ହେଲା। ସ୍ୱାମୀକୁ ଯାଇ ଏକଥା କହିଲା। ସୌଦାଗର ତ ଧୂର୍ତ୍ତ। ତାର ଗୁକରଙ୍କର ସର୍ତ୍ତକଥା ମନେ ପଡ଼ିଗଲା। ସେ ରାଗିଲା ନାହିଁ। ବରଂ ଗୁକରକୁ କହିଲା—"ସବୁବେଳେ ହୁସିଆର ହୋଇ କାମ କଲେ, କିଛି କ୍ଷତି ହେବ ନାହିଁ। ବେହୁସିଆର ହେଲେ, ବହୁତ କ୍ଷତି ହେବ। ତୋ ଯୋଗୁ ଆମେ ସବୁ ଉପାସ ରହିଲୁ।"

ଗୁକରଟି ହାତଯୋଡ଼ି କହିଲା—"ମୋର ଭୁଲ ହୋଇଯାଇଛି। ଆଉ ଏପରି ଘଟଣା ଘଟିବ ନାହିଁ।" ଏମିତି ଗୋଟେ ବଡ଼ ବହୁତ ଘଟଣା ଘଟିଗଲା। ଉଭୟେ ହୁସିଆର ରହିଲେ। କେହି କେବେ ହେଲେ ରାଗିଲେ ନାହିଁ।

ଅଷ୍ଟମ ମାସ। ଗୋବାଳ ହ୍ରଦ ପାଖରେ ବିରାଟ ମେଳା ହୁଏ। ଏହା ଏକ ତୀର୍ଥସ୍ଥାନ। ହଜାର ହଜାର ଲୋକ ଏଠାକୁ ଆସନ୍ତି। କିଣା ବିକା ଖୁବ୍ ଚାଲେ। ସବୁ ବର୍ଷ ସୌଦାଗର ତାର ବ୍ୟବସାୟ ପାଇଁ ସେଠାକୁ ଯାଏ।

ଏହା ଭିତରେ ସୌଦାଗର ବୁଝିଲାଣି ଯେ ତାର ଏଇ ଗୁକରଟି ଧୂର୍ତ୍ତ। କର୍ତ୍ତବ୍ୟ ପରାୟଣ। ବିଶ୍ୱସ୍ତ। ତେଣୁ ମେଳାକୁ ଯିବା ପୂର୍ବରୁ ତାକୁ ଡାକି ସେ କହିଲା—"ଦେଖ, ମୁଁ ମେଳାକୁ ଯାଉଛି। ସେଠି କିଛି ଦିନ ରହିବି। ଘରଦ୍ୱାର ସବୁ ତୋତେ ଲାଗିଲା। ନଜର ରଖିବୁ। ଯେମିତି ଘର ଦ୍ୱାର ଜିନିଷ ପତ୍ର

କିଛି କ୍ଷତି ନହୁଏ ।"

ସୌଦାଗର ଚାଲିଯିବାର କିଛିଦିନ ପରେ ଚାକରଟି ବି ମେଳା ଦେଖିବାକୁ ବାହାରିଲା । ଯିବାର ଫରଦିନ ସେ ବଡ଼ ବଡ଼ ବସ୍ତା ଆଣି ଘରର ସବୁ ଜିନିଷ ତା' ଭିତରେ ପୂରାଇଲା । ସବୁ ବସ୍ତା ଦେହରେ ଗୋଟିଏ ଗୋଟିଏ ପଥର ବାନ୍ଧିଲା । ସେ ସବୁକୁ ଡଙ୍ଗାରେ ଲଦି ଡାଲ ହ୍ରଦ ମଝିକୁ ନେଇଗଲା । ସେଇଠି ଗୋଟି ଗୋଟି କରି ପାଣିକୁ ପକାଇ ଦେଲା । ସେଗୁଡ଼ିକ ବୁଡ଼ିଯିବା ପରେ ଦୀର୍ଘ ନିଃଶ୍ୱାସ ପକାଇ କୂଳକୁ ଆସିଲା । ପରଦିନ ଗଙ୍ଗାବାଲ ମେଳାକୁ ବାହାରିଗଲା ।

ଗଙ୍ଗାବାଲ ମେଳାରେ ତମ୍ବୁ ଭିତରେ ସୌଦାଗର ଆରାମରେ ବସି ମିଠା ଚା' ଖାଉଥା'ନ୍ତି । ଏତିକିବେଳେ ଚାକରଟି ସେଠି ପହଞ୍ଚି ସମ୍ମାନ ଦେଲା । ସୌଦାଗର ତାକୁ ଦେଖି ଟିକିଏ କ୍ଷୁବ୍ଧ ହୋଇ ପଚାରିଲା—"ତତେ ସବୁ ଘର ଦାୟିତ୍ୱ ଦେଇ ଆସିଥିଲି । ତୁ କେମିତି ଜିନିଷପତ୍ର ଛାଡ଼ି ଚାଲି ଆସିଲୁ ?"

ଚାକରଟି କହିଲା—"ଭୟର କିଛି କାରଣ ନାହିଁ । ମୁଁ ସବୁ ଜିନିଷ ଯତ୍ନରେ ଆଉ ନିରାପଦ ଜାଗାରେ ରଖିଆସିଛି ।"

ମାଲିକଟି ଚାକର ତାର କେଉଁଠି ଜିନିଷ ସବୁ ରଖିଲା, ତାହା ଜାଣିବାକୁ ଉଦ୍‌ବିଗ୍ନ । ଚାକର ନିର୍ବିକାର ହୋଇ କହିଚାଲିଲା—"ବଡ଼ ବଡ଼ ବସ୍ତା ସବୁ ସଂଗ୍ରହ କଲି । ଘରର ଯେତେ ଜିନିଷ ଥିଲା ସେଥିରେ ସବୁ ପୂରାଇଲି । ସେ ଯେମିତି ଖୁବ୍ ଭାରି ହେବ ସେଥିପାଇଁ ସବୁ ବସ୍ତାରେ ବଡ଼ ବଡ଼ ପଥର ବାନ୍ଧିଲି । ତାପରେ ସେସବୁକୁ ଡଙ୍ଗାରେ ଡାଲ ହ୍ରଦର ମଝିକୁ ନେଇଗଲି । ସେଇଠି ବସ୍ତାଗୁଡ଼ିକୁ ପକାଇ ଦେଲି । ସେସବୁ ବୁଡ଼ି ପାଣି ତଳେ ରହିଗଲା । ପ୍ରତି ବସ୍ତା ଉପରେ ଅକାତକାତ ପାଣି । ସେଠାକୁ ଯିବା ବି କଷ୍ଟ ।

ତା' ଅତ୍ୟନ୍ତ ନିରାପଦ ଜାଗା । ସେଠୁ କେହି ହେଲେ ଆପଣଙ୍କର କିଛି ନେଇପାରିବେ ନାହିଁ ।''

ଏଇ ଚାକରର ଯୋଗୁ ସେ କାଙ୍ଗାଳ ହୋଇଗଲା । ଏହା ଶୁଣି ସେ ନିଜକୁ ଆଉ ସମ୍ଭାଳି ପାରିଲା ନାହିଁ । ଚିନ୍ତା କରିବାର ସମସ୍ତ ଶକ୍ତି ତାର ଯେମିତି ଉଭେଇଗଲା । ସେ ରାଗରେ ଖାଲି ଚମ ଚମ ହେଉଥାଏ । ସେ ବସିବା ଜାଗାରୁ ଉଠି ପଡ଼ିଲା । ତାପରେ ଚାକର ପାଖକୁ ଆସି ଗୋଟିଏ ଚାପୁଡ଼ାଟିଏ ଦେଲା । ମାଡ଼ରେ ଚାକରର କାନମୁଣ୍ଡ ଭାଁ ଭାଁ ହୋଇଗଲା । ତାର କିନ୍ତୁ ସେଥିପ୍ରତି ଖାତିର ନଥାଏ । ତାର ଯେ କାର୍ଯ୍ୟ ସିଦ୍ଧି ହୋଇଛି, ସେଥିପାଇଁ ସେ ଭାରି ଖୁସି । ମୁହଁରେ ତାର ବିଜୟୀର ହସ । ସେଠି ବଡ଼ ପାଟିରେ ହସି ହସି କହିଲା—''ଆପଣ ଶେଷକୁ ହାରିଲେ । ମୁଁ ବର୍ତ୍ତମାନ ମୋର ଚାକିରିର ସର୍ତ୍ତ ପୂରଣ କରିବି । ମୋର ବନ୍ଧୁ ପ୍ରତି କରିଥିବା ଅନ୍ୟାୟର ପ୍ରତିଶୋଧ ନେବି ।'' ତାପରେ ସେ ସୌଦାଗରକୁ ମାଡ଼ ବସିଲା । ଅଣ୍ଟାରୁ ଛୁରି ବାହାରି କରି ତାର ନାକ କାଟି ଦେଲା ।

ଏତେବେଳକୁ ସୌଦାଗରର ଚେତା ପଶିଲା । କିନ୍ତୁ ସେତେବେଳକୁ ନେଡ଼ ଗୁଡ଼ କହୁଣିକୁ ବୋହି ଯାଇଥିଲା ।

卐

# ମୁଦ୍ରା

କାଶ୍ମୀରର ଗୋଟିଏ ଗାଁ । ରାଜଧାନୀରୁ କାହିଁ କେତେ ଦୂର କିଛି ହେବନାହିଁ । ତା'ର ଚାରିପଟେ ପାହାଡ଼ । ଅତ୍ୟୁଚ୍ଚ ହିମାଳୟ । ଖୁବ ଉଚ୍ଚ । ଖାଖ । ସେଇବାଟେ ବାହାରକୁ ଯିବା ଏକାନ୍ତ ଅସମ୍ଭବ । ଆଉ ଯେଉଁପଟ ବାକି ରହିଲା, ସେପଟେ ଡାଲ ହ୍ରଦ ।

ଏଥିରେ ଅତଳ ଜଳ ପାଣି। ଟିକିଏ ପବନ ହେଲେ, ଏଥିରେ ଫଲଙ୍କା ଉଠେ। ଖୁବ ବଡ଼ ବଡ଼ ସେ ଫଲଙ୍କା। ସମୁଦ୍ରର ଲହରୀ ପରି। ସେଥିରେ ଡଙ୍ଗାରେ ସେତେବେଳେ ଯିବା ଭାରି ବିପଦ। ନିହାତି ଦରକାର ନ ପଡ଼ିଲେ ପ୍ରାଣ ଭୟରେ କେହି କେବେ ବାହାରକୁ ଯାଆନ୍ତି ନାହିଁ। ତେଣୁ ଏଠାକାର ଲୋକଙ୍କର ବାହାର ଦୁନିଆଁ ସାଥିରେ ସମ୍ପର୍କ ପ୍ରାୟ ନଥାଏ।

ଏଠାକାର ଲୋକେ ଭାରି ପରିଶ୍ରମୀ। ଆତ୍ମନିର୍ଭରଶୀଳ। ଜମି ବି ଏଠି ଖୁବ ଉର୍ବର। ସମସ୍ତଙ୍କ ବାଇରେ ବଗିଚା। ସେଥିରେ ପନିପରିବା ଚାଷ ହୁଏ। ବାଦାମ, ପେସ୍ତା, ସେଓ ଓ ଆଖ୍ରୋଟ ଫଳ ସେଠି ପ୍ରଚୁର ଫଳେ। କାଶ୍ମୀର ଲୋକଙ୍କର ପ୍ରିୟ ଖାଦ୍ୟ ଭାତ। ସମସ୍ତେ ତ ଚାଷୀ। ସମସ୍ତଙ୍କ ଅମାର ଧାନରେ ପୂର୍ଣ୍ଣ।

ଏଠି ଲୋକେ ଟଙ୍କା କ'ଣ ଜାଣନ୍ତି ନାହିଁ। ମୁଦ୍ରା ବିନିମୟରେ ଜିନିଷ କିଣାବିକା ହୁଏ ନାହିଁ। ଯାହାର ଯାହା ଦରକାର ପଡ଼େ, ଅନ୍ୟ ଜିନିଷ ବଦଳ ଦେଇ ତାକୁ ସେ ହାସଲ କରେ। ଏଠି ଜିନିଷ ସବୁ ଗଧ ପିଠିରେ ଲଦି ମାପ କରନ୍ତି। ଦରକାର ବେଳେ କେବେ କେମିତି କଉଡ଼ିର ବ୍ୟବହାର ବି ହୁଏ।

ଏଠା ଲୋକଙ୍କର ତାଙ୍କ ପୂର୍ବପୁରୁଷଙ୍କର ପ୍ରବଚନରେ ପୂରା ବିଶ୍ୱାସ। ସେମାନେ କହନ୍ତି—"ନିଜ ଡାଳରେ ବସିଥିବାବେଳେ ପକ୍ଷୀଟି ଆତ୍ମସନ୍ତୋଷ ଲାଭକରେ।"

ଥରେ ସେ ଗାଁକୁ ଜଣେ ଅପରିଚିତ ଲୋକ ଆସି ପହଞ୍ଚିଗଲେ। ସେ ଗୋଟିଏ ଟଙ୍କା ସାଥିରେ ଆଣିଥିଲେ। ଲୋକମାନେ ତାକୁ ଦେଖି ଆଶ୍ଚର୍ଯ୍ୟ। ଆଗରୁ ଏମିତି ଜିନିଷ ସେମାନେ ଦେଖି ନଥିଲେ। ସେମାନେ ଦେଖିଲେ— ଏଇଟି ରୂପାରେ ତିଆରି, ଦେଖିବାକୁ ଗୋଲ। ସୂର୍ଯ୍ୟ କିରଣରେ ଚକ ଚକ ମାରୁଛି। ସେଥିରେ ରାଜାଙ୍କର

ମୁଣ୍ଡରେ ଗୁପ୍ତ ଅଛି । ଏମିତି ଜନଷ ସେ ଗାଁର ଲୋକେ କେବେ-ହେଲେ ଦେଖି ନଥିଲେ । ଯେ ଦେଖିଲା, ଆଶ୍ଚର୍ଯ୍ୟ ହୋଇଗଲା । ଏ ଖବର ଜଙ୍ଗଲର ନିଆଁ ପରି ଚାରିଆଡ଼େ ବ୍ୟାପି ଗଲା । ଯେ ଯାହାର କାମଗୁଡ଼ା ଏ ଜନଷଟିକୁ ଦେଖିବାକୁ ଆସିଲେ । ସେମାନଙ୍କ ଭିତରେ ଗୋଟିଏ କଥା—ଯେଉଁ ବଣିଆଣି ନିଖୁଣ ଭାବରେ ରାଜାଙ୍କ ମୁଣ୍ଡ ଏଥିରେ ଖୋଳିଛି, ସେ ଧନ୍ୟ । କିଛି ସମୟ ସରଗରମ ଆଲୋଚନା ଚାଲିଲା । ତା'ପରେ ଧିରେ ସେସବୁ ଥଣ୍ଡା ହୋଇଗଲା । ତା'ପରେ ଚିନ୍ତା ପଡ଼ିଲା—ଏ ଜନଷଟି ଅପୂର୍ବ, ଅଦ୍ଭୁତ ଓ ଅତି ମୂଲ୍ୟବାନ । ସେମାନେ ଏହାକୁ ରଖି କ'ଣ କରିବେ ?

ଗାଁଠାଯାକ ମୁଖିଆ ଆସିଛନ୍ତି । ସମସ୍ତେ ଚୁପ୍‌ଚାପ ହୋଇ ସଭାରେ ବସିଥାନ୍ତି । ସମସ୍ତେ ଗମ୍ଭୀର । ସମସ୍ତଙ୍କ ମନ ଭାବାକ୍ରାନ୍ତ । ସମସ୍ୟାଟିର ସମାଧାନ ପାଇଁ ସମସ୍ତେ ଚିନ୍ତିତ । କିନ୍ତୁ କୂଳ କିନାରା କିଛି କେହି ପାଉ ନାହାନ୍ତି । ଚୁପ୍ ଚାପରେ କିଛି ସମୟ ଚାଲିଗଲା । ଶେଷକୁ ଦଳପତି ତାଙ୍କର ଗୁରୁ ଗମ୍ଭୀର ସ୍ୱରରେ କହିଲେ—"ଆମେ ସମସ୍ତେ ଆମ ପ୍ରିୟ ରାଜାଙ୍କର ପ୍ରଜା । ଆମ ରାଜାଙ୍କର ଆମ ପ୍ରତି ଶ୍ରଦ୍ଧା ବହୁତ । ଆମେ ତାଙ୍କ ରାଜ୍ୟରେ ଅଛୁ । ତାଙ୍କ ସମ୍ପତ୍ତି ଭୋଗ କରୁଛୁ, ସେ କେବେହେଲେ ଆମକୁ ଦଣ୍ଡ ନେଇ ନାହାନ୍ତି । ଏମିତି କି ଆମଠାରୁ ଖଜଣା ବି ନିଅନ୍ତି ନାହିଁ । ଏଇ ଯେଉଁ ଜନଷଟି ଦେଖୁଛ, ତାହା ଅତ୍ୟନ୍ତ ମୂଲ୍ୟବାନ, ଦୁର୍ଲ୍ଲଭ, ଦୁଷ୍ପ୍ରାପ୍ୟ । ଏବେ ସମୟ ଆସିଛି । ଏବେ ଜନଷଟି ରାଜାଙ୍କୁ ଉପହାର ଦେଲେ, ସେ ଖାଲି ଖୁସି ହେବେ ନାହିଁ, ସବୁଦିନ ପାଇଁ ଆମକୁ ମନେ ରଖିବେ ।"

ଏକଥା ସମସ୍ତଙ୍କ ମନକୁ ପାଇଲା । ମୁଖିଆମାନେ ସ୍ୱସ୍ତିର ନିଃଶ୍ୱାସ ମାରିଲେ । ତାପରେ ଆଉଗୋଟିଏ ଏକ ସମସ୍ୟା ଦେଖାଦେଲା ।

ସେଇଟି ଅତ୍ୟନ୍ତ ଗୁରୁତର । ଏଇ ଜନିଷଟି ରାଜାଙ୍କୁ ଉପହାର ଦିଆଯିବ ସତ, କିନ୍ତୁ ଉପହାର ଦେବା ପର୍ଯ୍ୟନ୍ତ କିଏ ଏହାର ଦାୟିତ୍ୱ ନେବ ?

ସବୁ ମୁଖିଆମାନଙ୍କ ମତରେ ଏହା ଅତ୍ୟନ୍ତ ମୂଲ୍ୟବାନ । ଏହାର ଦାୟିତ୍ୱ ଜଣେ ମୁଖିଆ ନେବା ଏକାନ୍ତ ଅସମ୍ଭବ । ତେଣୁ କେହି ମୁଖିଆ ଏହାର ଦାୟିତ୍ୱ ନେବାକୁ ରାଜି ହେଲେ ନାହିଁ । ବହୁ ଆଲୋଚନା ପରେ ସ୍ଥିରହେଲା—ଗୋଟିଏ ଚୌକି ଅଣାଯିବ ସେଥିରେ ଗୋଟିଏ ସିଲକ ଗଦି ପଡ଼ିବ । ତା' ପାଖରେ ଗୋଟିଏ ଦିଆ (କିରସିନି ଲ୍ୟାମ୍ପ) ଜଳିବ । ତା' ଉପରେ ଗୋଟିଏ ନାଲି ଛତା ଟଣା ହେବ । ସେଇ ଗଦି ଉପରେ ସେଇ ଅମୂଲ୍ୟ ଜନିଷଟି ରହିବ । ତା'ର ପାଖରେ ଚାରିଜଣ ମୁଖିଆ ପାଳକରି ବସି ରହିବେ । ତା'ଛଡ଼ା ବାହାରେ ଅନ୍ୟମାନେ ତାକୁ ଜଗିରହିବେ ।

କଥାଟି ଯାହା ସ୍ଥିରହେଲା, ସେଇଆ କାର୍ଯ୍ୟରେ ବି ହେଲା । ଏଇ ଜନିଷଟି ଗାଁ ଲୋକଙ୍କୁ ଏପରି ଉତ୍ତେଜିତ କରି ରଖିଥିଲା ଯେ ରାତିସାରା ସମସ୍ତେ ଉଜାଗର । ଗାଁଠାଯାକ ଗହଳ ଚହଳ । ପାହାନ୍ତା ପ୍ରହରର ବହୁପୂର୍ବରୁ ଲୋକେ ଆସି ମୂଲ୍ୟବାନ ଜନିଷ ରହିଥିବା ଜାଗା ପାଖରେ ରୁଣ୍ଡ ହୋଇଗଲେ । ଶୋଭାଯାତ୍ରା କିପରି ହେବ, ସମସ୍ତେ ସେଥିପାଇଁ ବ୍ୟସ୍ତ ।

ସକାଳ ହେବାରୁ ଗୋଟିଏ ସୁନ୍ଦର ପେସ୍ତା କାଠରେ ତିଆରି ପାଲିଙ୍କି ଅଣାଗଲା । ସେଥିରେ ଅଙ୍ଗୁରଲତା ଲଟେଇଥାଏ । ତା ଭିତରେ ନାଲି ରଙ୍ଗର କାଶ୍ମୀରି ଗଦି ପଡ଼ିଥିଲା । ସମସ୍ତଙ୍କ ଆଗରେ ସେଇ ମୂଲ୍ୟବାନ ଜନିଷକୁ ଅଣାଗଲା । ତାକୁ ପାଲିଙ୍କିରେ ପଡ଼ିଥିବା ଗଦି ଉପରେ ରଖାଗଲା । ସର୍ବସାଧାରଣଙ୍କ ନଜରକୁ ଏଡ଼ାଇବା ପାଇଁ ପାଲିଙ୍କି ଚାରିପଟେ ପରଦା ପକାଇ ଦିଆଗଲା ।

ଝିଅମାନେ ଲଳିତ ସ୍ୱରରେ ଗୀତ ଗାଇଲେ । ଚାରିଆଡ଼େ ଜୟ ଜୟକାର ଧ୍ୱନି ହେଲା । ଧୀର ଗମ୍ଭୀର ଭାବରେ ଚାରିଜଣ ବାହକ ପାଲିଙ୍କି ଉଠାଇ ଚାଲିଲେ । ପରିବେଶରୁ ଜଣାଯାଉଥିଲା ଯେ ସତେ ଯେମିତି ଏକ ପବିତ୍ର ଜିନିଷ ସେମାନେ ନେଇ ଯାଉଛନ୍ତି ।

ହ୍ରଦ କୂଳରେ ସୁସଜ୍ଜିତ ନୌକାଟିଏ ରଖାଯାଇଥିଲା । ପାଲିଙ୍କି ବାହାକମାନେ ପାଲିଙ୍କି ନେଇ ତା’ ଉପରେ ଆସ୍ତେକିନା ରଖିଲେ । ଲୋକମାନେ ପୁଷ୍ପବୃଷ୍ଟି କଲେ । ଧିରେ ଧିରେ ନୌକାଟି ଚାଲିବାକୁ ଲାଗିଲା ।

ସେଦିନ ହ୍ରଦଟି ଅସ୍ୱାଭାବିକ ଭାବରେ ଶାନ୍ତ ଥିଲା । ତା’ପାଣି ତରଳ ରୁପାପରି ଚକ୍ ଚକ୍ ମାରୁଥାଏ । ନୌକାଟି କଳା ଗାର ପକାଇ ଆଗକୁ ଚାଲିଥାଏ । ବାଟରେ କିଛି ଅସୁବିଧା ହେଲା ନାହିଁ । ନୌକାଟି ଆରପଟ କୂଳରେ ପହଞ୍ଚିଗଲା । ତାପରେ ଆସ୍ତେକିନେ ପାଲିଙ୍କି ଉଠାଇ ସେମାନେ ରାଜଧାନୀକୁ ଚାଲିଲେ । ଗହଣରେ ଦଳପତି, ସବୁ ମୁଖିଆ ଓ କେତେକ ଗ୍ରାମବାସୀ ।

ଗାଁ ଲୋକମାନେ ତାଙ୍କର ଭଲ ଭଲ ଲୁଗା ସାଇତି ରଖନ୍ତି । ଯାତ୍ରାଯାତ୍ରାରେ ତାକୁ ପିନ୍ଧି ବାହାରନ୍ତି । ଏଇଟା ସେମାନଙ୍କର ଅଭ୍ୟାସ । ରାଜାଙ୍କୁ ଭେଟିବାକୁ ଯେତେବେଳେ ସେମାନେ ଯାଉଛନ୍ତି, ସେମାନେ ତାଙ୍କର ସାଇତା ଲୁଗା ସବୁ ପିନ୍ଧିଥିଲେ । ସେସବୁ ବିଭିନ୍ନ ରଙ୍ଗର । ତା’ଛଡ଼ା ସେମାନେ ଯେ ଅତି ମଫସଲିଆ, ତା’ ସେମାନଙ୍କର ଗତିବିଧିରୁ ଜଣାପଡୁଥିଲା ।

ଏଇ ଶୋଭାଯାତ୍ରା ଯେ ଦେଖିଲା, ତାର କୌତୁହଳ ହେଲା । ଅନେକ ନୁହଁ, ବାରମ୍ବାର ପଚାରିଲେ । ଜଣେ ଅଧେ ପାଲିଙ୍କି ଆଡ଼କୁ ହାତ ଦେଖାଇ ଅତି ଗମ୍ଭୀର ଭାବରେ କହୁଥିଲେ— “ରାଜାଙ୍କପାଇଁ ଉପହାର ।” ସେଇଟା କ’ଣ ବୋଲି ପଚାରିଲେ,

ସେମାନେ ନିରୁତ୍ତର ରହିଥିଲେ ।

ଶେଷରେ ସେମାନେ ନଅର ଦ୍ୱାରରେ ପହଞ୍ଚିଲେ । ଦଳପତି ଟିକିଏ ଗଳା ଛାଡ଼ି ଖାଡ଼ିଲା । ତାପରେ ଦ୍ୱାରରକ୍ଷୀକୁ କହିଲା—"ଆମେ ରାଜାଙ୍କର ପ୍ରଜା । ତାଙ୍କ ପାଇଁ କିଛି ସାମାନ୍ୟ ଉପହାର ଆଣିଛୁ । ହୁକୁମ ହେଲେ ସ୍ୱହସ୍ତରେ ରାଜାଙ୍କୁ ପ୍ରଦାନ କରିବୁ । ତେଣୁ ପ୍ରାସାଦ ଭିତରକୁ ଯିବାକୁ ଅନୁମତି ମିଳୁ ।"

ଭିତରକୁ ଯିବାକୁ ଆଦେଶ ଆସିଲା । ଏ ଖବର ପାଇ ସମସ୍ତଙ୍କର ମନ କୁଣ୍ଢେ ମୋଟ । ଗର୍ବରେ ସେମାନେ ବେଲୁନପରି ଫୁଲି ଉଠିଲେ । ତାପରେ ଧୀରେ ଧୀରେ ରାଜପ୍ରାସାଦ ଭିତରକୁ ଗଲେ । ଏ ପ୍ରକାର ଘର ଓ ଏ ପ୍ରକାର ସାଜସଜ୍ଜା ସେମାନେ କେବେହେଲେ ଦେଖି ନଥିଲେ । ଯୁଆଡ଼େ ଚାହିଁଲେ, ତାଙ୍କୁ ସବୁ ଅପୂର୍ବ ଲାଗିଲା । ସେମାନେ ଏସବୁ ଦେଖି ଆବାକାବା ହୋଇ-ଯାଉଥାନ୍ତି । ସେମାନେ ଯାହାହେଉ ପାଲିଙ୍କିଟି ନେଇ ରାଜ ଦରବାରରେ ରାଜାଙ୍କ ସମ୍ମୁଖରେ ରଖିଲେ । ଗ୍ରାମବାସୀମାନେ ଜଣ ଜଣ କରି ଯାଇ ରାଜାଙ୍କ ପାଦ ଛୁଇଁ ମୁଣ୍ଡିଆ ମାରିଲେ । ତାପରେ ଦଳପତି ଅତି ନମ୍ର ଭାବରେ ନିବେଦନ କଲାଭଳି କହିଲେ "ଆମେ ପ୍ରଭୁଙ୍କର ନିରୀହ ପ୍ରଜା । ହଜୁରଙ୍କର ସେବା ତ ଦୂରର କଥା, ଦର୍ଶନ କରିବାର ସୌଭାଗ୍ୟ କେବେହେଲେ ପାଇନଥିଲୁ । ଆମେ ପ୍ରଭୁଙ୍କୁ ସମ୍ମାନ କରୁ । ପ୍ରଭୁଙ୍କର ଆମେ ବଶ୍ୟ । ସେଥିପାଇଁ ଆମେ ଗାଁରୁ ସାମାନ୍ୟ ଉପହାରଟିଏ ନେଇ ଆସିଛୁ । ପ୍ରଭୁଙ୍କର ଚରଣ ତଳେ ତାହାକୁ ସମର୍ପଣ କରିବାକୁ ଆଦେଶ ହେଉ ।"

ରାଜା ଏଇ ନିପଟ ମଫସଲ ଓ ସରଳ ଲୋକଙ୍କୁ ଦେଖି ମନେ ମନେ ଆମୋଦ ଅନୁଭବ କରୁଥିଲେ । ସେମାନଙ୍କ ଅନୁରୋଧ ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲେ । ମନ୍ତ୍ରୀଙ୍କ ସହ ପରାମର୍ଶ କଲେ ।

ତାପରେ ସେ ସହାସ୍ୟ ବଦନରେ ଅନୁମତି ଦେଲେ ।

ଦଳପତି ସଗର୍ବରେ ପାଲିଙ୍କି ପାଖକୁ ଗଲେ । ଗୃଳରେ ତାଙ୍କ ଗର୍ବ ଫୁଟି ଉଠୁଥିଲା । ସେ ଧୀରେ ଧୀରେ ଗ୍ଲୁଥିଲେ ସତ କିନ୍ତୁ ପାଦଗୁଡ଼ିକ ସେ ଲମ୍ବାଇ ଲମ୍ବାଇ ପକାଉଥିଲେ । ପାଲିଙ୍କି ପାଖକୁ ଯାଇ ସେ ପରଦାକୁ ଟେକିଲେ । ତା'ପରେ ମୂଲ୍ୟବାନ ଜିନଷଟିକୁ ଆଣିବା ପାଇଁ ହାତ ବଢ଼ାଇଲେ ।

ସାର୍‌ ଦରବାର ନିସ୍ତବଧ । ସମସ୍ତେ କୌତୁହଳ ହୋଇ ଦଳପତି ଆଡ଼କୁ ଅନାଇଥାନ୍ତି । କାହାର ବି ଆଖିର ପଲକ ପଡୁନଥାଏ ।

ଲୋକଟିର ହାତ ଫେରିଆସିଲା । ତା'ହାତରେ କିଛି ନାହିଁ । ମୁହଁରେ ତାର ଆଶ୍ଚର୍ଯ୍ୟଭାବ । ତା'ପରେ ଆସ୍ତେ ଆସ୍ତେ ତା' ବଦଳିଗଲା । ତା' ମୁହଁରୁ ଜଣାପଡୁଥିଲା—ସେ ଭୟଙ୍କର ଭାବରେ ବିଚଳିତ । ତା' ପରେ ପରେ ଭୟରେ ସେ ଶେତା ପଡ଼ିଗଲା । ଆସ୍ତେ ଆସ୍ତେ ସେ ମୁଖିଆମାନଙ୍କ ପାଖକୁ ଗଲା । ସେଠି ଫୁସ୍‌ଫାସ ହୋଇ କିଛି ସମୟ ଆଲୋଚନା ଗ୍ଲିଲା । ତା'ପରେ କେତେ ଜଣ ମୁଖିଆ ଆସି ପାଲିଙ୍କି ଭିତର ଖୋଜିଲେ । ସେମାନେ ତ କିଛି ପାଇଲେ ନାହିଁ । ସମସ୍ତଙ୍କ ଆଖି ଭୟପୂର୍ଣ୍ଣ । ପୁଣି ଫୁସ୍‌ଫାସ ହୋଇ ଆଲୋଚନା କଲେ ।

ସେତେବେଳକୁ ରଜା କ'ଣ, ସବୁ ସଭାସଦ୍‌ମାନେ ଅଧୈର୍ଯ୍ୟ । ଉତ୍କଣ୍ଠିତ । ରଜା ହାଇ ମାରିଲେ । ସଭାସଦ୍‌ମାନେ ନିଜ ନିଜ ଆସନରେ ଏପଟ ସେପଟ ହେବାକୁ ଲାଗିଲେ । ଏତିକିବେଳେ ସବୁ ମୁଖିଆଙ୍କ ସହ ଦଳପତି ସାଷ୍ଟାଙ୍ଗ ହୋଇ ତଳେ ପଡ଼ିଗଲେ । ସେମାନଙ୍କ କଣ୍ଠ ବାଷ୍ପରୁଦ୍ଧ । ସେଇ ଅବସ୍ଥାରେ ଥରି ଥରି ଦଳପତି କହିଲେ— "ହଜୁର, ଆମେ ଆପଣଙ୍କ ପାଇଁ ଆଣିଥିବା ଉପହାର ହଜାଇ

ଦେଇଛୁ । ଏ ଅପରାଧ ଅକ୍ଷମଣୀୟ । ଆମେ ଦୋଷୀ, ଯାହା ଉଚିତ ମନେ କରିବେ, ସେ ଦଣ୍ଡ ଦିଅନ୍ତୁ । ଆମେ ମୁଣ୍ଡପାତି ସେ ସବୁ ସହିନେବୁ ।”

ସଭାସଦ୍‌ମାନେ ଏମାନଙ୍କର ଏ ଢଙ୍ଗ ଦେଖି ବିରକ୍ତ । କ୍ରୋଧାନ୍ୱିତ । ସେମାନେ ତାଙ୍କ ରାଗ ସମ୍ବରଣ କରିପାରିଲେ ନାହିଁ । ସେମାନେ ଗର୍ଜି ଉଠିଲେ—“ତୁମେମାନେ କ’ଣ ମହାରାଜଙ୍କ ସାଥିରେ ଖେଳୁଛ ? କିଛି ନ ଆଣି, ତୁମ୍ଭୁଙ୍କୁ ବୋକା ବନାଇବାର ଏ ଏକ ଉଦ୍ୟମ । ଏ ଦୁଃସାହାସ ଅସହ୍ୟ । ଅକ୍ଷମଣୀୟ । ମୃତ୍ୟୁଦଣ୍ଡ ଛଡ଼ା ଅନ୍ୟ କୌଣସି ଦଣ୍ଡ ଏଇ ଅପରାଧ ପାଇଁ ପ୍ରଯୁଜ୍ୟ ନୁହେଁ ।”

ରାଜା ଶାନ୍ତ ଆଉ ଧିର ଭାବରେ ସେଇ ଲୋକଙ୍କର ଗତିବିଧି ଦେଖୁଥାନ୍ତି । ସଭାସଦ୍‌ମାନଙ୍କର ଅସହ୍ୟତାକୁ ବେଶ୍ ଉପଲବ୍ଧି କରୁଥାଆନ୍ତି । ରାଜା ବୁଝିଲେ ଯେ ଏଇ ଗାଉଁଲି ଲୋକମାନେ ଏକଦମ୍ ସରଳ । ସାହସ ତ ଦୂରର କଥା । ଚାଲବାଜି ଖେଳିବାର କଳ୍ପନା ବି ଏମାନଙ୍କୁ ଛୁଇଁ ନଥିବ । ରାଜା ତଥାପି ତାଙ୍କ ସରଳତା ଜାଣିବାକୁ ଚାହିଁଲେ । ରାତିରେ ସେମାନଙ୍କୁ ବନ୍ଦୀ ଶାଳାରେ ରଖିବାକୁ ଆଦେଶ ଦେଲେ ।

ପ୍ରହରୀମାନେ ସେମାନଙ୍କୁ ଜେଲକୁ ନେଇଗଲେ । ଜେଲରେ ପୁରାଇ ଫାଟକ ଯେମିତି ପକାଇ ଦିଆଗଲା, ସେମାନେ ଆଉ ସହି ପାରିଲେ ନାହିଁ । ଭୋ ଭୋ ହୋଇ କାନ୍ଦିଲେ । ସମସ୍ତେ ସେମାନଙ୍କର ଭାଗ୍ୟକୁ ନିନ୍ଦା କଲେ ।

ସେତେବେଳକୁ ଶୀତ ପଡ଼ିଆସିଲାଣି । ନିଆଁ ଉହ୍ମେଇ ନ ହେଲେ, ରାତିରେ ଶୋଇବା କଷ୍ଟ । ଜେଲଖାନା ଖୁବ୍ ଥଣ୍ଡା । ରାଜାଙ୍କ ଆଦେଶରେ ସମସ୍ତଙ୍କୁ ଉହ୍ମେଇଟିଏ ଓ ଦିଆସିଲଟିଏ ଦିଆଗଲା । ସମସ୍ତେ ଏତକ ଗ୍ରହଣ କରି ଟିକିଏ ଆଶ୍ୱସ୍ତ ହେଲେ ।

ତା’ପରେ ବିଆସିଳଟିକୁ ଏପଟ ସେପଟ ବହୁତ କଲେ । ଏପରି ଜିନିଷ ସେମାନେ ତ ଦେଖି ନଥିଲେ । ତାକୁ ବ୍ୟବହାର କରି ଉଦ୍ଦେଶ୍ୟରେ ଲଗାଇ ପାରିଲେ ନାହିଁ ।

ରାତିରେ ବହୁତ ଥଣ୍ଡା ପଡ଼ିଲା । ଶୀତରେ ସେମାନେ ଖୁବ୍ ଥରିଲେ । ଦାନ୍ତଗୁଡ଼ିକ ତାଙ୍କର ଠକ୍ ଠକ୍ ବାଜୁଥିଲା । ନିସ୍ତବ୍ଧ ରାତିରେ ସେ ଶବ୍ଦ ବି ବେଶ୍ ଶୁଣାଯାଉଥିଲା । ପ୍ରହରୀମାନେ ଏ ସବୁ ଲକ୍ଷ୍ୟ କରୁଥିଲେ । ସେମାନେ ସମସ୍ତେ ମୂର୍ଖିଆ । ସେମାନଙ୍କ ଘରେ ଗୋଟିଏ କି ଦୁଇଟି ନିଆଁ ହୁଳା ଜଳୁଥାଏ । ସେ କେବେ ହେଲେ ଲିଭେ ନାହିଁ । ସେଇଥିରୁ ସମସ୍ତେ ନିଆଁ ବ୍ୟବହାର କରନ୍ତି । ବିଆସିଳି କ’ଣ ସେମାନେ ଜାଣିନଥିଲେ ।

ପରଦିନ ସକାଳ । ସେମାନେ ରାତିଟି କିପରି କଟାଇଲେ, ସେ ବିଷୟରେ ରାଜା ପ୍ରଥମେ ପ୍ରହରୀମାନଙ୍କଠାରୁ ଖବର ନେଲେ । ସେତେବେଳେ ରାଜା ଜାଣିଲେ ଯେ ସେମାନେ ନିହାତି ସରଳ । ଏପରିକି ବିଆସିଳି ବ୍ୟବହାର ଜାଣି ନାହାନ୍ତି । ରାଜାଙ୍କର ସେମାନଙ୍କ ପ୍ରତି ଖୁବ୍ ଦୟା ହେଲା । ସାଙ୍ଗେ ସାଙ୍ଗେ ସେମାନଙ୍କୁ ଆଣି ଦରବାରରେ ହାଜର କରିବାକୁ ଆଦେଶ ଦେଲେ ।

ଜେଲରୁ ସେ ସମସ୍ତେ ରାଜାଙ୍କ ପାଖକୁ ଆସିଲେ । ରାଜା ଦଳପତିଙ୍କୁ ପାଖକୁ ଡାକି ସବୁ କଥା କହିବାକୁ ଆଦେଶ ଦେଲେ । ଦଳପତି ଗୋଟି ଗୋଟି କରି ସମସ୍ତ କଥା ତାଙ୍କୁ କହିଲା । ଶେଷକୁ କହିଲା—“ଏ ଉପହାର ନିହାତି ଶ୍ରେଷ୍ଠ । ବାଟରେ କେଉଁଠି ଖସି ପଡ଼ିଲା ।”

ରାଜା ଏସବୁ ଶୁଣି ଠୋ ଠୋ ହୋଇ ହସି ଉଠିଲେ । ସେମାନେ ଯେ କେତେ ସରଳ, ରାଜା ଅନୁମାନ କରିପାରିଲେ ନାହିଁ । ସମସ୍ତଙ୍କୁ ନୂତନ ବସ୍ତ୍ର ଓ ଯଥେଷ୍ଟ ଉପହାରମାନ ଦେବାକୁ

ଆଦେଶ ଦେଲେ ।

ଏ ଆଦେଶ ଶୁଣି ଜଳପନ୍ତ ଓ ମୁଖିଆ ସ୍ତବ୍ଧ ହୋଇଗଲେ । ତାପରେ ସମସ୍ତଙ୍କ ମୁହଁରେ ହସ । ଆନନ୍ଦର ପ୍ରକାଶ ।

ରାଜା ଦତ୍ତ ନୂଆ ନୂଆ ପୋଷାକ ଓ କୋଟ ପିନ୍ଧି ସେମାନେ ଗାଁକୁ ଫେରିଲେ ।

ତାଙ୍କ ଯାତ୍ରା କଥା ଗୃହଆଡ଼େ ବ୍ୟାପିଗଲା । ଯେ ଶୁଣିଲା, ସେ ହସିଲା । କିନ୍ତୁ ଏଇ ଗାଉଁଲି ଲୋକମାନେ ସେଇଦିନୁ ମୁଦ୍ରାର ପ୍ରଚଳନ ଜାଣିଲେ ।

ଏକଥା ଲୋକେ ଭୁଲିନାହାନ୍ତି, ଗାଁଲୋକେ ଏକଥା ଏବେ ବି ଗପନ୍ତି ।

卐

## ଡାକୁ ସର୍ଦ୍ଦାର

କାଶ୍ମୀରରେ ଜଣେ ପଣ୍ଡିତ ଥିଲେ । ତାଙ୍କର ଗୋଟିଏ ବୋଲି ଝିଅ । ଦେଖିବାକୁ ସେ ଅପୂର୍ବ ସୁନ୍ଦରୀ । ବିବାହ ବୟସ ହୋଇଗଲାଣି । ଅନେକ ପ୍ରସ୍ତାବ ଆସୁଛି । ତା' ପୁଣି ଭଲ ଭଲ ଘରୁ । ବହୁ ଧନୀ ବ୍ୟକ୍ତି ପଣ୍ଡିତଙ୍କ ଝିଅକୁ ବୋହୂ କରିନେବାକୁ ଆଗ୍ରହୀ । କିନ୍ତୁ ବିଚିତ୍ର । ପଣ୍ଡିତେ ଝିଅର ବାହାଘରର ନାଁ ଗନ୍ଧ ବି ଧରୁ ନାହାନ୍ତି ।

କଥାଟା ଘର ଭିତରେ ସୀମାବଦ୍ଧ ହୋଇ ଆଉ ନାହିଁ । ଏ ବିଷୟରେ ଦାଣ୍ଡରେ ଘାଟରେ କଥା ପଡ଼େ । ବନ୍ଧୁବାନ୍ଧବ ଭିତରେ ଆଲୋଚନା ହୁଏ । ସମସ୍ତେ ପଣ୍ଡିତଙ୍କୁ ଛି-ଛିକାର କରନ୍ତି । କହନ୍ତି — ସେଇଟା ବାପ ନୁହଁ ଶତ୍ରୁ । କିନ୍ତୁ ପଣ୍ଡିତେ ଏସବୁ ଶୁଣି

ନଶୁଣିଲା ପରି ରହନ୍ତି । ପ୍ରତିବାଦ କରିବା ତ ଦୂରର କଥା, ପଚାରିଲେ ଉତ୍ତର ବି ଦିଅନ୍ତି ନାହିଁ ।

ଆଗେ ପଣ୍ଡିତଙ୍କ ଘରର ନାଁ ଡାକ ଥିଲା । ଘରେ ଚାକର ଚାକରାଣୀ ଅସଂଖ୍ୟ ଥିଲେ । ସମ୍ପତ୍ତି ବହୁତ ଥିଲା । ଏମାନେ ରାଜ ରାଜୁଡ଼ାଙ୍କ ଆଦାବ କାଇଦାରେ ଚଳୁଥିଲେ । ଏମାନଙ୍କର ଖର୍ଚ୍ଚ ବେମାପ ଚାଲିଥିଲା । ଏମାନଙ୍କ ଘରେ ଶିବ ରାତ୍ରିରେ ବହୁତ ଲୋକଙ୍କର ସମାବେଶ ହୁଏ । ଏମିତିକି ଶିବରାତ୍ରି ପରେ ଯାହାଠା କିଛିଦିନ ଧରି ଚାଲେ । ଯେ ଆସେ, ସେ ସନ୍ତୁଷ୍ଟ ହୋଇଯାଏ । ନୂଆବର୍ଷ କଥା ତ ଛାଡ଼ । ଘରେ ସମସ୍ତଙ୍କ ପାଇଁ ନୂଆ ଲୁଗା ହୁଏ । ଏପରି କି କୁଣିଆ ମଇତ, ବାଦ ଯାଆନ୍ତି ନାହିଁ ।

ଏବେ ଆଉ ଏତେ ଆଡ଼ମ୍ବର ନାହିଁ । ସମ୍ପତ୍ତିବାଡ଼ି କମି ଗଲଣି । ତଥାପି ସେମିତି ଘରଠା ଅଛି । ଚାକର, ଚାକରାଣୀ ବି କିଛି ଅଛନ୍ତି । ସବୁ ଯାନଯାତ୍ରା ହେଉଛି । କିନ୍ତୁ ଆଡ଼ମ୍ବର କମିଯାଇଛି । ଲୋକେ କହନ୍ତି—ଆଗ ପଣ୍ଡିତମାନେ ହାତ ଖୋଲା ରଖୁଥିଲେ । ଏବେକାର ପଣ୍ଡିତେ ଟିକଏ କଞ୍ଜୁସ୍ ।

ଯେତେବେଳେ ପଣ୍ଡିତଙ୍କ ଘରକଥା ଆଲୋଚନା ହୁଏ, ଲୋକେ କହନ୍ତି—ବାପ୍‌ରେ ବାପ୍, ପଣ୍ଡିତଙ୍କର ସମ୍ପତ୍ତି କଥା କୁହନି । ତାଙ୍କର ଅସଂଖ୍ୟ ଅମାର । ସେସବୁ ଗଣିହେବ ନାହିଁ । ସବୁଥିରେ ଶସ୍ୟ ପୂର୍ଣ୍ଣ । ତାଙ୍କ ଘରେ ସିନ୍ଦୁକର ଅଭାବ ନାହିଁ । ସୁନା ରୂପାରେ ସର୍ବଦା ପୂର୍ଣ୍ଣ । ତାଙ୍କର ଉଦ୍ଧ ଯେତେ, ପୋତା ତାଠାରୁ ଅଧିକ ।

ପଣ୍ଡିତଙ୍କର ଭିତର କଥା ଅଲଗା । ପୂର୍ବପୁରୁଷମାନେ ତାଙ୍କର ଖୁବ୍ ଖର୍ଚ୍ଚୀ ଥିଲେ । ସେସବୁ ସାରି ଦେଇଛନ୍ତି । ଏଇ ପଣ୍ଡିତଙ୍କ ବେଳକୁ ଆଉ କିଛି ନାହିଁ । ଖାଲି ଥାଟ ଅଛି । ଶେଷ

ଦାମ୍ଭାଦ ସ୍ୱଭାବରେ ପଣ୍ଡିତ ଚେଷ୍ଟା କରି ଥାଟ ବଜାୟ ରଖିଛନ୍ତି । ସେ ଭାରି ଗମ୍ଭୀର । ତାଙ୍କଠାରୁ କଥାଟା ନେବା ମୁସ୍କିଲ । ତେଣୁ ତାଙ୍କର ଅବସ୍ଥା ସମ୍ପର୍କରେ କେହି କିଛି ଟେର ପାଆନ୍ତି ନାହିଁ ।

ପଣ୍ଡିତେ ତାଙ୍କ ଝିଅକଥା ଯେ ଭାବୁନଥିଲେ, ତାହା ନୁହେଁ । ଝିଅକଥା ଭାବିଲେ, ସେ ବ୍ୟସ୍ତ ହୋଇ ଉଠନ୍ତି । ରାତିରେ ନିଦ ହୁଏନାହିଁ । ସେ ଜାଣନ୍ତି, ତାଙ୍କ ଭୁଣ୍ଡ ଖୋଲିଲେ ବାହାଘର ସ୍ଥିର ହୋଇଯିବ । ଯେଉଁ ଘରେ ବନ୍ଧୁ ବାନ୍ଧିବେ, ତାର ତ ସମାଜରେ ସ୍ଥାନ ଅଛି । ଉଭୟଙ୍କୁ ସୁହାଇଲା ଭଳି ଉତ୍ସବଟିଏ କରିବାକୁ ହେବ । ସେକଥା ତ କମ୍ ନୁହଁ । ତାଛଡ଼ା ଝିଅକୁ କିଛି ଯୌତୁକ ଦେବାକୁ ହେବ । ନହେଲେ ଲୋକେ କ'ଣ କହିବେ ? ଏସବୁ ଆୟୋଜନ ପାଇଁ ଅର୍ଥ ଦରକାର । ତାଙ୍କ ହାତରେ ପଇସାଟିଏ ନାହିଁ । ଏତେ ପଇସା କେଉଁଠୁ ଯୋଗାଡ଼ କରିବେ, ସେଇଟା ତାଙ୍କର ଚିନ୍ତାର କାରଣ । ଖର୍ଚ୍ଚ ଭୟରେ ସେ କିଛି କହନ୍ତି ନାହିଁ । ଚୁପ୍ ହୋଇ ରହନ୍ତି ।

ସୁନ୍ଦର । ସେଇ ଗାଁର ମଧ୍ୟବିତ୍ତ ପରିବାରର ଜଣେ ଲୋକ । ସେ ପଣ୍ଡିତଙ୍କର ପିଲାଦିନର ସାଥୀ । ଦୁହିଁଙ୍କର ଭଲ ପଡ଼େ । ପଣ୍ଡିତେ ବେଳେ ବେଳେ ସୁନ୍ଦର ସାଥୀରେ ଦୁ'ପଦ କଥାବାର୍ତ୍ତା ହୁଅନ୍ତି ।

ଥରେ ଗାଁରେ ବିବାଦ ହେଲା । ଲୋକେ ପଣ୍ଡିତଙ୍କର ବିରୁଦ୍ଧରେ ମାତିଲେ । ଜମି ତାଙ୍କର ପଡ଼ିଆ ପକାଇଲେ । ପଣ୍ଡିତେ ତ ଖୁବ୍ ଭଦ୍ର । ଝଗଡ଼ା କରିବାକୁ ସେ ଜମା ଶୁହାନ୍ତି ନାହିଁ । ତେଣୁ ସେ ଚୁପ୍ ହୋଇ ରହିଲେ । ଏତିକବେଳେ ସୁନ୍ଦର ପଣ୍ଡିତଙ୍କୁ ସାହାଯ୍ୟ କଲା । କିଛି ଲୋକଙ୍କୁ ପଣ୍ଡିତ ବିରୁଦ୍ଧ ଦଳରୁ ଫେଟାଇ ଆଣିଲା । ଫଳରେ ପଣ୍ଡିତଙ୍କର ଜମି ଉଠିଆ ହେଲା । ସେଇଦିନୁ

ପଣ୍ଡିତେ ସୁନ୍ଦର ପାଖରେ କୃତଜ୍ଞ । ସେ ଭାବନ୍ତି, ସୁନ୍ଦର ସାହାଯ୍ୟ କରିନଥିଲେ ସେ ଧ୍ୱଂସ ହୋଇ ଯାଇଥାନ୍ତେ । ସୁନ୍ଦର ଭାବେ, ପଣ୍ଡିତ ସବୁବେଳେ ତା' କଥାରେ ରହିବେ । ସେ ଯାହା କହିଲେ ପଣ୍ଡିତ ମାନିବେ । ସୁନ୍ଦରର ଗର୍ବ ବଢ଼ିଲା । ପଣ୍ଡିତଙ୍କୁ ରକ୍ଷା କରିଥିବା କଥା ବାହାରେ ଗପେ । ବାହାଦୂରି ଦେଖାଏ ।

ଥରେ ସୁନ୍ଦରର କିଛି ଟଙ୍କା ଜରୁରୀ ଦରକାର ପଡ଼ିଲା । ତାର ବିଶ୍ୱାସ ଥିଲା—ପଣ୍ଡିତେ ତାକୁ ସେ ସମୁଦାୟ ଟଙ୍କା ଧାର ଦେଇଦେବେ । ସେଇ ଅନୁସାରେ ସେ ପଣ୍ଡିତଙ୍କୁ ଧାର ମାଗିଲା । ପ୍ରକୃତରେ ପଣ୍ଡିତଙ୍କ ପାଖରେ ଏତେ ଟଙ୍କା ନଥିଲା । ତା'ଛଡ଼ା ଏତେଗୁଡ଼ିଏ ଟଙ୍କା ଯୋଗାଡ଼ କରିବା ତାଙ୍କ ପକ୍ଷେ ସମ୍ଭବପର ହେଲା ନାହିଁ । ସେକଥା ସେ ସୁନ୍ଦରକୁ ବୁଝାଇ ଦେଲେ । ସୁନ୍ଦର କ'ଣ ବୁଝେ ? ସେ ଭାବିଲା—ପଣ୍ଡିତଙ୍କର ତା' ଉପରେ ବିଶ୍ୱାସ ନାହିଁ । ତେଣୁ ତାକୁ ଟଙ୍କା ଦେବାପାଇଁ ମନା କରିଦେଲେ ।

ସେଇଦିନୁ ପଣ୍ଡିତଙ୍କ ଉପରେ ସୁନ୍ଦରର ଭାରି ରାଗ । ସେ ତାଙ୍କ ଘରକୁ ଆଉ ଯାଏ ନାହିଁ । ତାଙ୍କର ଛିଦ୍ର ଖୋଜି ବୁଲେ । ଟିକିଏ ସୁବିଧା ପାଇଲେ, ତାଙ୍କୁ ଛି-ଛିକାର କରେ । ଏପରିକି ରାସ୍ତା ଘାଟରେ ପଣ୍ଡିତଙ୍କ ସାଥିରେ ଦେଖା ହେଲେ, ସେ ତାଙ୍କୁ ବିଦ୍ରୂପ କରେ । ସୁନ୍ଦରର ଏ ପ୍ରକୃତି ଦେଖି ପଣ୍ଡିତେ ଡରିଗଲେଣି । ସୁନ୍ଦର ସାଥିରେ ତାଙ୍କର ଯେମିତି ଦେଖା ନ ହେବ, ସେ ତାର ବ୍ୟବସ୍ଥା କରନ୍ତି । ପଣ୍ଡିତଙ୍କର ଏ ଆଚରଣରେ ସୁନ୍ଦର ଆହୁରି ଉତ୍ତ୍ୟକ୍ତ । ସେ ପଣ୍ଡିତଙ୍କୁ ହଲଚଲାନ୍ତ କରିଦେବାକୁ ମନସ୍ଥ କଲା । ସେଥିପାଇଁ ସୁନ୍ଦର ମଉକା ଖୋଜୁଥାଏ ।

ସୁନ୍ଦରର ଗୋଟିଏ କୁକୁର ଥିଲା । ସେ ଭାରି ସିକ୍‌ଚାଲିଆ । ଦୁନିଆ ଲୋକଙ୍କ ସାଥିରେ ତାର ଭାବ । ତାର ଆଚରଣ ସୁନ୍ଦରକୁ

ଭଲ ଲାଗେ ନାହିଁ । ତେଣୁ ତା'ଉପରେ ସୁନ୍ଦର ରାଗେ । ସୁନ୍ଦରକୁ ସନ୍ତୁଷ୍ଟ କରିବାକୁ ତା' ଶ୍ବଶୁରର ଖୁବ୍ ଆଗ୍ରହ ।

ସୁନ୍ଦରର ମନକଥା ସେ କେମିତି ଜାଣିଗଲା । ଦିନେ ସେ ସୁନ୍ଦରକୁ କହିଲା—"ଡାକୁ ସର୍ଦ୍ଦାର ସାଥିରେ ମୋର ଭାବ ଅଛି । ମୁଁ ତାକୁ ଡାକି ଆଣିବି । ତା' ସାଥିରେ ଆପଣ କଥାବାର୍ତ୍ତା କରିବେ । ଆପଣ ଯଦି ଚାହିଁବେ, ଡାକୁ ସର୍ଦ୍ଦାର ପଣ୍ଡିତଙ୍କ ଘରେ କଳାକନା ବୁଲାଇଦେବ । ପଣ୍ଡିତେ ଓ ତାଙ୍କ ପୂର୍ବପୁରୁଷଙ୍କର ଥାଟ ଏକାଥରକେ ସମାଧି ନେଇଯିବ ।"

ଆଗରୁ ସୁନ୍ଦର ଡାକୁ ସର୍ଦ୍ଦାର ନାଁ ଶୁଣିଥିଲା । ସେ ତାର କୌଶଳ ଓ ବୁଦ୍ଧି ପାଇଁ ଚାରିଆଡ଼େ ପ୍ରସିଦ୍ଧ । ଡାକୁ ସର୍ଦ୍ଦାର ନାଁ ଶୁଣିଲେ, ଲୋକେ ଥରହର । ସେକଥା ସେ ଜାଣିଥିଲା । ଶ୍ବଶୁରର କଥାଟା ସୁନ୍ଦରର ମନକୁ ବେଶ୍ ପାଇଲା । ଶ୍ବଶୁର ଜରିଆରେ ଡାକୁ ସର୍ଦ୍ଦାର ସାଥିରେ ସେ ଯୋଗାଯୋଗ କଲା ।

ସେତେବେଳକୁ ଅଧ ରାତି । ଡାକୁ ସର୍ଦ୍ଦାର ପଣ୍ଡିତଙ୍କ ଘରେ ପଶିଥାଏ । ସେ ଦେଖିଲା—ପଣ୍ଡିତେ ଓ ତାଙ୍କ ସ୍ତ୍ରୀ ଶୋଇ ନାହାନ୍ତି । କ'ଣ ଗୋଟିଏ ଆଲୋଚନା କରୁଛନ୍ତି । ସେମାନେ ନ ଶୋଇଲେ, ତା'କାମ ତ ହୋଇପାରିବ ନାହିଁ । ତେଣୁ ସେ ସେମାନଙ୍କ ଶୋଇବା ପର୍ଯ୍ୟନ୍ତ ଲୁଚିକରି ରହିଲା । ସେମାନେ କ'ଣ କଥାବାର୍ତ୍ତା ହେଉଛନ୍ତି, କାନଡେରି ଶୁଣିଲା । ପଣ୍ଡିତାଣୀ କହୁଥା'ନ୍ତି—"ଝିଅ ଆସି ବୁଢ଼ୀ ହେବାକୁ ବସିଲଣି । ପ୍ରସ୍ତାବ ପରେ ପ୍ରସ୍ତାବ ଆସୁଛି । ଝିଅଟିକୁ ଉଠାଇ ଦେଲେ, ବୋଝ ଯାଆନ୍ତା । ତୁମେ କାହିଁକି ରାଜି ହେଉନାହଁ ?"

ଏକ ଦୀର୍ଘ ନିଃଶ୍ୱାସ ପକାଇ ପଣ୍ଡିତ କହିଲେ—"ତୁମେ ମଧ୍ୟ ବାହାର ଲୋକ ସଙ୍ଗେ ସମାନ ହୋଇ ଗଲଣି । ଘରେ

ମାଲିକାଣୀ ହୋଇ ବ ଘର କଥା ବୁଝିଲ ନାହିଁ । ଘରେ ଆମର ଥାଇ ଧାନ କ ଗହମ ନାହିଁ । ସିନ୍ଦୁକ ବହୁତ ଅଛି କିନ୍ତୁ ସେଥିରେ କିଛି ନାହିଁ । ତୁମେ ଏକଥା ସବୁ ଜାଣିଲ ନାହିଁ । ଏଇ ଖାଲି ଘରେ ମୁଁ ମାଲିକ । ବଂଶର ଗାରିମା ଓ ସମ୍ମାନ ବଜାୟ ରଖିବାକୁ ମୁଁ ଧାର ଉଧାର କରି ସବୁ ଯାନଯାତ୍ରା ଚଳାଇ ନେଉଛି । ଅଭାବ ବଢ଼ି ବଢ଼ି ଚାଲିଛି । କୌଣସି ଧାର ମୁଁ ଶୁଝି ପାରୁନାହିଁ । ମୁଁ ବର୍ତ୍ତମାନ ଏପରି ଅବସ୍ଥାକୁ ଆସିଲିଣି ଯେ ଧାର ମାଗିଲେ ବ କେହି ପଇସାଟିଏ ଦେଉ ନାହାଁନ୍ତି । ଏପରି ଅବସ୍ଥାରେ ଝିଅକୁ କିପରି ବାହା କରିବ ? କେଉଁ ବାପ ତା' ଝିଅକୁ ବାହା ଦେବାକୁ ଚାହେଁ ନାହିଁ । ମୁଁ ତ ଜଣେ ସାଧାରଣ ମଣିଷ । ବ୍ୟତିକ୍ରମ କିପରି ହେବ ? ଅବସ୍ଥା ଚକ୍ରରେ ପଡ଼ି ମୁଁ ଝିଅ ବାହାଘରର ନାଁ ଧରୁନାହିଁ ।"

ପଣ୍ଡିତଆଣୀ ଏକଥା ଶୁଣି କିଛି ସମୟ ସ୍ତବ୍ଧ ହୋଇଗଲା । ତାପରେ କାନ୍ଦି କାନ୍ଦି କହିଲା—"ହେ ଭଗବାନ ! ଏ କ'ଣ ହେଲା ? ମୋତେ ତୁମେ ଏମିତି କାହିଁକି କଲ ? ମୋ ଝିଅ କ'ଣ ଚିରଦିନ ବାଡ଼ୁଅ ରହିଯିବ ?" ତା'ପରେ ସେ କଇଁ କଇଁ ହୋଇ କାନ୍ଦି ଉଠିଲା ।

ପରେ ପଣ୍ଡିତେ ସ୍ତ୍ରୀର କାନ୍ଦଣା ଆଉ ସହିପାରିଲେ ନାହିଁ । ସେ ମଧ୍ୟ ଭେ ଭେ ହୋଇ କାନ୍ଦିଲେ । କି ଦୁଃଖଦାୟୀ ସେ କାନ୍ଦ । ପଥର ବ ପାଣି ହୋଇଯିବ ।

ଡାକୁ ସର୍ଦ୍ଦାର ତ ଲୁଚିକରି ସବୁ ଶୁଣୁଥିଲା । ଏମାନଙ୍କର ଅବସ୍ଥା ବିଷୟ ତାକୁ ଆଉ ଅଜଣା ରହିଲା ନାହିଁ । ପଣ୍ଡିତଙ୍କ ଘରୁ ଯେ ପଇସା ପାଇବ ନାହିଁ, ଏ ବିଷୟରେ ସେ ଧ୍ରୁବ । କିନ୍ତୁ ସେ ସେଠୁ ଗଲେ ଶବ୍ଦ ହେବ । ପଣ୍ଡିତେ ଉଠିବେ । ସେଥିପାଇଁ ସେମାନେ ନିଦରେ ଶୋଇବା ପର୍ଯ୍ୟନ୍ତ ସେ ଅପେକ୍ଷା କଲା ।

କିଛି ସମୟ ପରେ ଆପେ ଆପେ ପଣ୍ଡିତ ଓ ତାଙ୍କର ସ୍ତ୍ରୀ ଆଶ୍ୱସ୍ତ ହେଲେ । ତାପରେ ସେମାନେ ଶୋଇଗଲେ ।

ପଣ୍ଡିତଙ୍କର ଦୁଃଖ ଦେଖି ଡାକୁ ସର୍ଦ୍ଦାର ଦୟା ହେଲା । ସେ ତାଙ୍କୁ କିପରି ସାହାଯ୍ୟ କରିବ, ସେଇଠା ତାର ଚିନ୍ତା । ଏଣେ ଅଯଥାରେ ସୁନ୍ଦର ତାଙ୍କୁ ହଇରାଣ କରୁଥିବାରୁ ତାର ରାଗ ହେଲା । ତାକୁ ପା୍ନ ଦେବ ବୋଲି ସ୍ଥିରକଲା । ପଣ୍ଡିତ ଓ ତାଙ୍କ ସ୍ତ୍ରୀ ନିଘୋଡ଼ ନିଦରେ ଶୋଇ ପଡ଼ିବା ପରେ ସେଠୁ ସେ ପଳାଇଲା ।

ରାତି ପାହି ଆସିଲାଣି । ଡାକୁ ସର୍ଦ୍ଦାରର ଦେଖା ନାହିଁ । ସେଥିପାଇଁ ସୁନ୍ଦର ବ୍ୟସ୍ତ । ବିବ୍ରତ । ପ୍ରତି ମୁହୂର୍ତ୍ତ ଗୋଟିଏ ଯୁଗଟିପରି ତାକୁ ଲାଗୁଥାଏ ।

ରାତି ପାହିଲା ବେଳକୁ ସୁନ୍ଦରକୁ ନିଦ ହୋଇଗଲା । ସ୍ତ୍ରୀ ତା'ର ତାକୁ ବିଛଣାରୁ ଉଠାଇ କହିଲା—"ଆମ ଭଣ୍ଡାର ଘର ଅସ୍ତବ୍ୟସ୍ତ ହୋଇପଡ଼ିଛି । ଆମର ସମସ୍ତ ସମ୍ପତ୍ତି ଲୁଟ ହୋଇଯାଇଛି । ଆସି ଦେଖ ।"

ସୁନ୍ଦର ତା' ସ୍ତ୍ରୀର କଥାକୁ ବିଶ୍ୱାସ କରିପାରିଲା ନାହିଁ । ବିଛଣାରୁ ଉଠି ଭଣ୍ଡାର ଘରକୁ ଧାଇଁଲା । ଯାହା ଦେଖିଲା, ସେଥିରେ ତାକୁ ଗୁରୁଆଡ଼ ଅନ୍ଧାର ଦିଶିଲା । ତା' ଘରେ ଥିବା ସମସ୍ତ ସୁନାରୂପା, ଟଙ୍କା ପଇସା ଆଦି ଲୁଟ ହୋଇଯାଇଛି । ଏବେ ସେ କପର୍ଦ୍ଦକ ଶୂନ୍ୟ । ଦାଣ୍ଡର ଭିକାରୀ । ସେ ଥକ୍କା ମାରି ବସି ପଡ଼ିଲା ।

ଭୋରରୁ ପଣ୍ଡିତଙ୍କ ସ୍ତ୍ରୀ ଉଠି ଦେଖିଲା ତା' ତକିଆ ପାଖରେ ଗୋଟିଏ ବୁଜୁଲି ଥୁଆହୋଇଛି । ତାକୁ ଦେଖି ସେ ଆଶ୍ଚର୍ଯ୍ୟ । କବାଟ ବନ୍ଦକରି ସେମାନେ ଶୋଇଥିଲେ । ବୁଜୁଲାଟିଏ ଏଠାକୁ ଆସିଲା କିପରି ? ସେ କୌତୁହଳ ହୋଇ ବୁଜୁଲାଟି ଖୋଲିଲା ।

ଯାହା ଦେଖିଲା, ତାର ଆଖି ଖୋସି ହୋଇଗଲା । ସେଥିରେ ସୁନା, ରୁପା ଟଙ୍କା ପଇସା ବହୁତ ଥିଲା । ସେ ପଣ୍ଡିତଙ୍କୁ ଉଠାଇଲା । ପଣ୍ଡିତେ ଉଠି ସେ ସୁନାରୁପାକୁ ଘାଣ୍ଟିଲେ । ସେଥିରେ ଖଣ୍ଡେ ଲେଖା ଥିଲା, ପଣ୍ଡିତେ ତାକୁ ପଢ଼ିଲେ—"ବ୍ୟସ୍ତ ହେବାର ଆଉ ଦରକାର ନାହିଁ । ଝିଅ ବାହାଘର ଶୀଘ୍ର କରିଦିଅ । ସେଥିପାଇଁ ଏଇ ସାମାନ୍ୟ ଉପହାର ।

ଡାକୁ ସର୍ଦ୍ଦାର



# ଅକାଳ ଦୁନ

ପ୍ରାଚୀନ କାଳରେ କାଶ୍ମୀରର ଗୋଟିଏ ଭାଗରେ ସନ୍ଧିପତ ନାମକ ଗୋଟିଏ ନଗର ଥିଲା । ସେଠାରେ ଜଣେ ରାଜା ରାଜୁତି କରୁଥିଲେ । ତାଙ୍କ ରାଣୀଙ୍କ ନାମ ରତ୍ନମାଳା । ଏହି ରାଜ୍ୟ ବର୍ତ୍ତମାନ ଜଳମଗ୍ନ । ବୁଲର ହ୍ରଦ ନାମରେ ନାମିତ । ସେ ରାଜାଙ୍କର କୌଣସି ପୁତ୍ର ନଥିଲା । ପୁଅପାଇଁ ରାଜାରାଣୀ ପାଗଳ । ସେଇ ଆଶାରେ ସେମାନେ ମନପ୍ରାଣ ଦେଇ ଯୋଗୀ, ଋଷିଙ୍କର ସେବା କରନ୍ତି । ଥରେ ତାଙ୍କ ଉଆସକୁ ଜଣେ ଯୋଗୀ ଆସିଲେ । ରାଜାରାଣୀ ଦୁହେଁ ତାଙ୍କୁ ଭକ୍ତିର ସହ ସେବା କଲେ । ଏଥିରେ ଯୋଗୀ ମୁଗ୍ଧ । ଯୋଗୀଙ୍କର ପ୍ରଶ୍ନରେ ସେମାନେ ତାଙ୍କ ମନୋବାଞ୍ଛା ପ୍ରକାଶ କଲେ ।

ଯୋଗୀ ଉତ୍ତର ଦେଲେ—"ରାଜା, ତୋର ପୁତ୍ରପ୍ରାପ୍ତି ହେବ, କିନ୍ତୁ ଗୋଟିଏ ସର୍ତ୍ତରେ ।"

ରାଜା ରାଣୀଙ୍କର ପୁଅପାଇଁ ଉତ୍କଣ୍ଠା ବହୁତ । ଏଥିପାଇଁ ସେମାନେ ପାଗଳ । ଏକାବେଳକେ ଉଭୟେ ଉତ୍ତର ଦେଲେ—

''ସେଇ ସର୍ତ୍ତଟି କ'ଣ କହିବା ହୁଅନ୍ତୁ । ଆମେ ଶୁଣିବାକୁ ଖାଲି ଆଗ୍ରହୀ ନୁହଁ, ପାଳିବୁ ମଧ୍ୟ ।''

ରାଜାରାଣୀଙ୍କର କଥା ଶୁଣି ଯୋଗୀ କହିଲେ—''ସର୍ତ୍ତ ଟିକେ କଠିନ ହୋଇପାରେ । ତୁମେ ହୁଏତ ଏହାକୁ ଗ୍ରହଣ କରିନପାର । କିନ୍ତୁ ସେହି ସର୍ତ୍ତଟି ହେଲା, ଯଦି ମୋ ଚେଷ୍ଟାରୁ ତୁମର ପୁଅଟିଏ ହୁଏ, ତେବେ ସେ କେବଳ ଏଗାର ବର୍ଷ ପର୍ଯ୍ୟନ୍ତ ତୁମମାନଙ୍କ ପାଖରେ ରହିବ ଏବଂ ତା'ପରେ ତାକୁ ତୁମେମାନେ ମତେ ଅର୍ପଣ କରିବ । ତୁମେମାନେ ଏଥିରେ ରାଜି ତ ?''

ରାଜାରାଣୀ କିଛି ସମୟ ପରସ୍ପର ପରସ୍ପରର ମୁହଁକୁ ଖାଲି ଚାହିଁ ରହିଲେ । ସେମାନେ କହିଲେ—''ଆମର ପୁଅଟିଏ ନାହିଁ । ପୁଅଟିଏ ହୋଇ ଏଗାର ବର୍ଷ ଆମ ପାଖରେ ରହିବ । ତା'ପରେ ସେ ଯାଇ ଯାହା ପାଖରେ ରହିବ, ଏଥିରେ କ୍ଷତି କ'ଣ ? ଆମ ପାଖରେ ଆଗ ଏଗାର ବର୍ଷ ରହୁ ପରେ ନ ରହିଲେ ବି ଚଳିବ । ତେଣୁ ଏ ସର୍ତ୍ତ ଗ୍ରହଣୀୟ ।''

ଏହା ଶୁଣି ଯୋଗୀ କହିଲେ—''ଠିକ୍ ଅଛି । ଆଜିଠାରୁ ଠିକ୍ ନଅ ମାସରେ ତୁମ ଘରେ ଗୋଟିଏ ପୁଅ ଜନ୍ମଲାଭ କରିବ ।'' ଏହା କହି ସେ ସେମାନଙ୍କୁ ଆଶୀର୍ବାଦ ଦେଇ ଚାଲିଗଲେ ।

ଉପଯୁକ୍ତ ସମୟରେ ରାଣୀଙ୍କର ସୁନ୍ଦର ପୁଅଟିଏ ହେଲା । ସେ ତାର ନାମ ଅକନ୍ତ ଦୁନ ରଖିଲେ । ସେ ବଡ଼ ହୋଇ ପାଠଶାଳାକୁ ପଢ଼ିବାକୁ ଗଲା । ସବୁବେଳେ ସବୁ ବିଷୟରେ ସବୁ ଛାତ୍ରଙ୍କଠାରୁ ସେ ଜିତିଯାଏ । ତା'ଭଳି ବୁଦ୍ଧିମାନ ପିଲା କେହି ବିଦ୍ୟାଳୟରେ ନଥିଲେ । ଦିନ ଗଡ଼ିଚାଲିଲା । ଏହା ଭିତରେ ଏଗାର ବର୍ଷ ପୂରିଆସିଲା । ଠିକ୍ ଯେଉଁଦିନ ଏଗାର ବର୍ଷ ପୂରିଗଲା, ସେହି ଯୋଗୀଜଣଙ୍କ ଠିକ୍ ସେହିଦିନ ଆସି ପହଞ୍ଚିଗଲେ । ରାଜା, ରାଣୀଙ୍କୁ

ସେ କହିଲେ—"ବର୍ତ୍ତମାନ ତୁମେ ତୁମର ସର୍ତ୍ତ ପୂରଣ କର ଏବଂ ଅକନ୍ତ ଦୁନକୁ ମୋତେ ଅର୍ପଣ କର ।"

ଦୁଃଖ ମନରେ ରାଜାରାଣୀ ଅକନ୍ତ ଦୁନକୁ ପାଠଶାଳାରୁ ଡକାଇଲେ ଓ ଯୋଗୀଙ୍କୁ କହିଲେ, ଯୋଗୀ ମହାରାଜ—"ଏହା ଆପଣଙ୍କର ଆଶୀର୍ବାଦ ।"

ତାକୁ ଦେଖି ଯୋଗୀଜଣକ ଗମ୍ଭୀର ସ୍ୱରରେ କହିଲେ—"ତେବେ ଡେରି କାହିଁକି ? ମୋତେ ଭାରି ଭୋକ । ଏହାକୁ ବଧକରି ଏହାର ମାଂସ ରାନ୍ଧି ମୋତେ ଖାଇବାକୁ ଦିଅ । ହେଲା ଜମା କରନାହିଁ ।"

ରାଜାରାଣୀ କାନ୍ଦି କାନ୍ଦି ଯୋଗୀଙ୍କୁ ପ୍ରାର୍ଥନା କଲେ—"ମହାମନ୍ତ, ଏମନ୍ତ ଘୃଣିତ ଓ କ୍ରୂରକାର୍ଯ୍ୟ କରିବାପାଇଁ ଆମକୁ ଆଦେଶ ନ ଦେଉ ।" କିନ୍ତୁ ଯୋଗୀ ତାଙ୍କ କଥାକୁ କର୍ଣ୍ଣପାତ କଲେ ନାହିଁ । ବରଂ କ୍ରୋଧରେ ଜର୍ଜରିତ ହୋଇ କହିଲେ—"ତୁମେ ରାଜା, ତେଣୁ ଏହାର ବଧ ତୁମ ହାତରେ କେବଳ ହେବ, ଏହା ଜରୁରୀ । ତୁମର ସେ ରାଣୀ, ତେଣୁ ସେ ହିଁ କେବଳ ରାନ୍ଧିବେ । ଯଦି ତୁମେ ଏ ଆଦେଶ ପାଳନ ନ କର ଏ ରାଜ୍ୟର ଲୋକେ ଆଉ ମୋତ ନିୟମ ମାନିବେ ନାହିଁ ।" ରାଜାରାଣୀ ନିରୁପାୟ । ବାଧ ହୋଇ ସେ ଅକନ୍ତ ଦୁନକୁ ମାରି ତା'ର ମାଂସ ରାନ୍ଧିଲେ । ରନ୍ଧା ସରିଲା, ଏହା ଦେଖି ଯୋଗୀ କହିଲେ—"ଏଥର ବିଳମ୍ବ କାହିଁକି ? ଏହାକୁ ଚାରୋଟି ଥାଳିରେ ବାଢ଼ । ଗୋଟେ ମୋ ନିମିତ୍ତ, ଦୁଇଟି ତୁମମାନଙ୍କ ପାଇଁ ଏବଂ ଚତୁର୍ଥ ଥାଳିଟି ସ୍ୱୟଂ ଅକନ୍ତ ଦୁନ ପାଇଁ ।"

ଅକନ୍ତ ଦୁନ ପାଇଁ ଥାଳି ନାମ ଶୁଣି ରାଜାରାଣୀ ମର୍ମାହତ । ଭୟଙ୍କର ଦୁଃଖିତ, ସେମାନେ କାନ୍ଦି ପକାଇଲେ । ଜବାବ ତ ଦିଆ

ହୋଇଛୁ । ତେଣୁ ଯୋଗୀଙ୍କର ଆଜ୍ଞା ପାଳନ କରିବାକୁ ହେବ । ଖିରଟି ଥାଳରେ ପରସା ହେଲା । ସମସ୍ତେ ନିଜ ନିଜ ଆସନ ଗ୍ରହଣ କଲେ । ରାଜାରାଣୀଙ୍କ ନୟନରୁ ନିରନ୍ତର ଅଶ୍ରୁଧାର ବହିଯାଉଥାଏ । ଏହି ସମୟରେ ଯୋଗୀକ କହିଲେ—"ରାଣୀ ରତ୍ନମାଳା, ଉଠ ଏବଂ ଝରକା ପାଖକୁ ଯାଅ । ସବୁବେଳେ ଯେପରି ପୁଅକୁ ଡାକୁଥିଲ, ଏବେ ବି ସେହିପରି ତାକୁ ଡାକ, ଖୁବ୍ ଜଲଦି ଆ । ଖାଇବା ଥଣ୍ଡା ହୋଇଗଲାଣି ।"

ରାଣୀ ରତ୍ନମାଳା ଘୋର ଦୁଃଖ ମନରେ କାନ୍ଦି କାନ୍ଦି ଝରକା ପାଖକୁ ଗଲେ ଏବଂ ଅନନ୍ତ ଦୁନକୁ ନାମଧରି ଡାକିଲେ । ତାଙ୍କର ଡାକିବା ମାତ୍ରେ ଅନନ୍ତ ଦୁନ ପ୍ରତିଦିନ ପରି ଆସୁଥିବାର ଦେଖିଲେ । ରାଣୀ ରତ୍ନମାଳା ଏବଂ ରାଜା ତା'ପାଖକୁ ଦୌଡ଼ିଯାଇ ପୁଅକୁ କୁଣ୍ଢାଇ ପକାଇଲେ କିନ୍ତୁ ଏ କ'ଣ ? ଯେତେବେଳେ ସେମାନେ ପଛକୁ ବୁଲିପଡ଼ିଲେ, ଦେଖିଲେ ସେଠାରେ ବଢ଼ା ହୋଇଥିବା ଥାଳି ଏବଂ ଯୋଗୀ କେହି ନାହାନ୍ତି । ରାଜାରାଣୀ ଯୋଗୀଙ୍କୁ ଚାରିଆଡ଼େ ଖୋଜିଲେ, ମାତ୍ର କେଉଁଠାରେ ତାଙ୍କର ଦର୍ଶନ ପାଇଲେ ନାହିଁ । ସେ କିଏ ? କେଉଁଠାରୁ ଆସିଥିଲେ ଏବଂ କେଉଁଆଡ଼େ ଚାଲିଗଲେ ତାଙ୍କର ପତ୍ତା ପାଇଲେ ନାହିଁ । ଏହା ତାଙ୍କୁ ସ୍ୱପ୍ନଭଳି ଲାଗିଲା ।

ରାଜାରାଣୀ ପୁତ୍ର ଅନନ୍ତ ଦୁନକୁ ପାଇ ଖୁସିରେ ରହିଲେ ।

卐

# ପଣ୍ଡିତ ଓ ପଠାଣ

ବହୁଦିନ ତଳେ କାଶ୍ମୀରରେ ପଠାଣମାନେ ରାଜୁତି କରୁଥିଲେ । ସେମାନେ ରାଜବଂଶୀୟ—ଏହା ଥିଲା ସେମାନଙ୍କର ଗର୍ବ । ନିଜର

ଆଧିପତ୍ୟ ଦେଖାଇବା ପାଇଁ ସେମାନେ ନଶକୁ ମୋଡ଼ି ତାର ଅଗ୍ରଭାଗକୁ ଉପରକୁ ଉଠାଇ ରଖୁଥିଲେ ।

ଦିନକର କଥା । ପଠାଣଟିଏ ରାଜଧାନୀ ସହରରେ ଟହଲ ମାରୁଥିଲା । (କାଶ୍ମୀରର ବ୍ରାହ୍ମଣମାନଙ୍କୁ ପଣ୍ଡିତ କୁହାଯାଏ) । କିଛି ପଣ୍ଡିତ ରାସ୍ତା କଡ଼ରେ ଠିଆ ହୋଇଥିଲେ । ତାଙ୍କ ଭିତରୁ ଜଣେ ଯୁବକ ପଣ୍ଡିତ ପଠାଣଙ୍କ ଭଳି ଅଠା ଦେଇ ନଶକୁ ମୋଡ଼ି ତା'ର ଅଗ୍ରକୁ ଗୋଜିଆ କରି ଉପରକୁ ଟେକିଥିଲା । ଏହା ପଠାଣଟିର ନଜରରେ ପଡ଼ିଲା । ସେ ଭାବିଲା—ଯୁବକର ଏପରି ଭାବରେ ନଶକୁ ଟେକି ରଖିବାଟା ଦୁର୍ଦ୍ଧର୍ଷ ପଠାଣଜାତି ପ୍ରତି ଅପମାନ । ତାକୁ ସେ ଡାକିଲା । ଗାମ୍ଭୀର୍ଯ୍ୟ ସହ ଆଦେଶଭରା ଚଡ଼ା ଗଳାରେ କହିଲା—"ତୁ କାହିଁକି ନଶକୁ ମୋଡ଼ି ଗୋଜିଆ କରି ଉପରକୁ ଉଠାଇଛୁ ?" ଜଣେ ଦୁର୍ଦ୍ଧର୍ଷ ଯୋଦ୍ଧା ରାଗି ଗଲେଣି । ଏହା ଦେଖି ଜମା ହୋଇଥିବା କାଶ୍ମୀରି ଲୋକମାନେ ଗୁମନିଆ । ସେମାନେ ସେଠାରୁ ଭୟରେ ପଳାଇଗଲେ । କିନ୍ତୁ ଯେଉଁ ପଣ୍ଡିତକୁ ନଶ ପାଇଁ ପଚରା ଯାଇଥିଲା, ସେ କହିଲା—"ଯାହାହେଉ ପଛେ ନଶଟି ମୋ ନିଜର । ତେଣୁ ମୁଁ ଯେମିତି ଚାହିଁବି ସେମିତି ନଶଟିକୁ ବାଗେଇ ପାରିବି ।"

ପଠାଣଟି ତା'ର ନ୍ୟାଯ୍ୟ ଅଧିକାର ସାବ୍ୟସ୍ତ କରିବାପାଇଁ ଗର୍ଜି ଉଠିଲା —"ନା, ତା' କେବେ ହେଲେ ହୋଇପାରିବ ନାହିଁ । ରାଜବଂଶୀୟ ଦୁର୍ଦ୍ଧର୍ଷ ପଠାଣଙ୍କ ନଶ ପରି ନଶକୁ ବାଗେଇବାର ଅଧିକାର ତୋର ନାହିଁ ।" ଏହା ଯଥାର୍ଥ । ପଣ୍ଡିତଟି ଯଦିଓ ଏହା ହୃଦୟଙ୍ଗମ କଲା, ତଥାପି ସେ ଖୁବ୍ ସାହାସର ସହିତ ପଚାରିଲା— "କାହିଁକି ?" ପଠାଣଟି ନିଜ ଗୋଡ଼କୁ ଖୁବ୍ ଜୋରରେ ତଳେ ବାଡ଼େଇ ଗର୍ଜି ଉଠିଲା- "ତୁ ପୁଣି ପଚାରୁଛୁ କାହିଁକି ? ତୁ କ'ଣ

ଜାଣିନାହୁଁ ଯେ, ଭୁ ଯେ ପଠାଣ ଭଳି ଧାର୍ମିକ ଓ ସାହସୀ ବୋଲି ଲୋକମାନଙ୍କୁ କେବେ ହେଲେ ଭାବିବାକୁ ଦିଆଯିବ ନାହିଁ ।”

ତାକୁ ବାଧା ଦେଇ ଆସ୍ତେ ଆସ୍ତେ ପଣ୍ଡିତଟି କହିଲା—“ମୁଁ ବି ତୁମରି ସମକକ୍ଷ ।” ଏ ପ୍ରକାର ମନ୍ତବ୍ୟରେ ପଠାଣ ବିବ୍ରତ । ସେ ତା’ର ଖଣ୍ଡା ବାହାର କରି କହିଲା—“ଆମ ଭିତରେ କିଏ ସାହସୀ, ତାହା ଦ୍ୱନ୍ଦ ଯୁଦ୍ଧରେ ପ୍ରମାଣ କରିବା ।”

ଖଣ୍ଡାଟିର ଉଜ୍ଜ୍ୱଳ ଧାର ଦେଖି ପଣ୍ଡିତ କିଛି ପାଦ ପଛକୁ ହଟିଗଲା । ଭୟଭୀତ ହୋଇ ସେ ପଠାଣକୁ ସମ୍ବୋଧନ କଲା—“ପଠାଣ ସାହେବ ! ପ୍ରଥମ କଥା ହେଲା ମୋ ପାଖରେ ଖଣ୍ଡା ନାହିଁ । ଦ୍ୱିତୀୟଟି ହେଲା, ଦ୍ୱନ୍ଦଯୁଦ୍ଧ ହେଲେ ଆମ ଭିତରୁ ଜଣେ ନିହତ ହେବ । ଯେ ବଞ୍ଚିରହିବ ସେ ମଧ୍ୟ ପଙ୍ଗୁ ହୋଇଯିବ । ମୁଁ ଘରକୁ ଯାଉଛି, ଖଣ୍ଡାଟି ଆଣିବି । ମୋ ପରିବାରର ପ୍ରତ୍ୟେକ ବ୍ୟକ୍ତିଙ୍କୁ ହତ୍ୟା କରିବି । ଯେପରି କି ମୋ ଭଳି ଦୋଷଣାହାରୀର ମୃତ୍ୟୁରେ କାହାରି ଆଉ ଦୁଃଖ କରିବାର କିଛି ନଥିବ ।”

ଏହା ସାହସୀ ପଠାଣ ମନରେ ଏକ ନୂତନ ଚିନ୍ତାଧାରା ସୃଷ୍ଟି କଲା । ସେ କହିଲା—“ମୁଁ ମଧ୍ୟ ଘରକୁ ଯାଇ ମୋ ପରିବାରର ସମସ୍ତଙ୍କୁ ହତ୍ୟା କରିବି ।” ଦ୍ୱନ୍ଦ ଯୁଦ୍ଧପାଇଁ ନିର୍ଦ୍ଦିଷ୍ଟ ଦିନ ଓ ସ୍ଥାନ ସେମାନେ ସ୍ଥିର କଲେ । ତା’ପରେ ଉଭୟେ ସେମାନଙ୍କ ଘରକୁ ଗଲେ । ପଠାଣଟି ଯାହା କହିଥିଲା, ତାହାହିଁ କଲା । ଏମିତି କି ନିଜ ପରିବାରର ସମସ୍ତଙ୍କୁ ସେ ଗୋଟାକ ପରେ ଗୋଟାକୁ ହତ୍ୟା କଲା । ନବଜାତ ଶିଶୁଟିଏ ବି ସେଥିରୁ ବାଦ ଗଲାନାହିଁ ।

ପଣ୍ଡିତ ଘରକୁ ଗଲା । ନିଶରୁ ଅଠା ଛଡ଼ାଇଲା । ସ୍ତ୍ରୀ ଓ ପିଲାଙ୍କ ସାଥୀରେ ମଉଜ ମଜଲିସରେ ସମୟ ତା’ର କଟିଗଲା ।

ହାନ୍ଦ ଯୁଦ୍ଧକୁ ବାହାରିଲା ବେଳେ ଖଣ୍ଡା ନେବାକୁ ବି ସେ ଭୁଲିଗଲା । ନିର୍ଦ୍ଦିଷ୍ଟ ସ୍ଥାନରେ ଆଗରୁ ପଠାଣଟି ପହଞ୍ଚି ଯାଇଥିଲା । ସେ ତା'ର ଖଣ୍ଡାରେ ଲାଗିଥିବା ଚକ୍‌ଚକ୍ ଘଷି ଛଡ଼ାଇବାରେ ବ୍ୟସ୍ତ ଥାଏ ।

ଏତିକିବେଳେ ପଣ୍ଡିତ ସେଠାରେ ପହଞ୍ଚିଗଲା । ହାତରେ ତାର ଖଣ୍ଡା ନାହିଁ । ଏହା ଦେଖି ପଠାଣଟି କହିଉଠିଲା-"ପଣ୍ଡିତେ ! ତୋର ଖଣ୍ଡା କାହିଁ ? କ'ଣ ତୋର ହେଲା ?"

ପଣ୍ଡିତଟି ଅତି ବିନମ୍ର ଭାବରେ କହିଲା—"କ'ଣ ପାଇଁ ଏତେ ବ୍ୟସ୍ତ ? ମୋ ନିଶକୁ ଦେଖ । ଏହା ଆଉ ମୋଡ଼ା ହୋଇ ଉପରକୁ ଉଠି ନାହିଁ । ଏଣୁ ଆମ ହାନ୍ଦର ପରିସମାପ୍ତି ଘଟିଛି ।" ପଠାଣଟି ଆବାକାବା ହୋଇ ଅନାଇ ରହିଲା । ❋❋

## ଚତୁର ଗଞ୍ଜା

କୋକିଶିଆଳୀଟିଏ ବୁଲୁ ବୁଲୁ ଯାଇ ଗୋଟିଏ ଗାଁରେ ପହଞ୍ଚିଗଲା । ସେଠାରେ ସେ ଗୋଟିଏ ଗଞ୍ଜା ଦେଖିଲା । ଗଞ୍ଜା ମାଂସ ସ୍ୱାଦୁ । କ୍ଷୁଧା ପ୍ରବର୍ତ୍ତକ । ଗଞ୍ଜାକୁ ଧରି ଗିଳି ପକାଇବାକୁ ତାର ଭାରି ଇଚ୍ଛା । ସେ ଭାବିଲା—ଅଯଥା ଅପଦସ୍ତ ହେବା ବୁଦ୍ଧିଆର ପରିଚୟସୂଚକ ନୁହେଁ । ସେ ଜାଣେ, ଗଞ୍ଜାକୁ ଧରିବାକୁ ଚେଷ୍ଟା କଲେ, ସେ ଦୌଡ଼ ପଳାଇବ ନଚେତ୍ ଉଡ଼ିଯିବ । ଶଠତା ପ୍ରୟୋଗରେ ଗଞ୍ଜାର ସନ୍ଦେହ ରହିବ ନାହିଁ । ଧରିବା ସହଜ ହେବ ।

ଧିରେ ଧିରେ ସେ ଗଞ୍ଜା ପାଖକୁ ଆଗେଇ ଯାଇ କହିଲା — "ମୁଁ ତୋର ଡାକ ଯେତେବେଳେ ଶୁଣେ ମୋର ଗୁଣ୍ଡ ଫୁଲିଉଠେ । ତା'ଛଡ଼ା ତୋ ଡାକରେ ମଣିଷ ଉଠି ଠାକୁରଙ୍କୁ ଡାକେ । ତୋ ଚୁଳ ଓ ମୁକୁଟ ଭଳି ସୁନ୍ଦର । ଆକର୍ଷଣୀୟ । ତୋତେ ଆଜ ଭେଟିଲି । ଏହା ମୋର ସୌଭାଗ୍ୟ ।"

ତୋଷାମଦରେ ଗଞ୍ଜା ଉଦ୍‌ବୁଦ୍ଧ । ଉତ୍‌ଫୁଲ୍ଲ । ସେ ଡାକିବାକୁ ଆରମ୍ଭ କଲା । ଗଞ୍ଜା ଡାକିଲା ବେଳେ ତା'ର ଆଖି ବନ୍ଦ କରେ ।

ଏହା ତାର ପ୍ରକୃତ । କୋକଶିଆଳୀ ଏହା ଲକ୍ଷ୍ୟ କଲା । ଏହା ତାର ଯୋଜନା କାର୍ଯ୍ୟକାରୀ କରିବାକୁ ସାହାଯ୍ୟ କରିବ । ସେଥିପାଇଁ ସେ ପ୍ରସ୍ତୁତ ହୋଇ ରହିଲା ।

ଦ୍ୱିତୀୟ ଥର ଡାକିବା ବେଳେ ଗଞ୍ଜା ଯେମିତି ଆଖି ବନ୍ଦ କରିଛି, କୋକଶିଆଳୀ ଗଞ୍ଜା ବେକକୁ ଖପ୍‌କରି ପାଟିରେ ଧରିନେଲା । ଖାଇଲା ନାହିଁ । କୂଅ ପାଖ ଗଛ ଗୁଡିରେ ଗଞ୍ଜାଟିକୁ ଖାଇବାକୁ ତାର ଇଚ୍ଛା । ତେଣୁ ସେ ଚାଲିଲା । ପାଟିରେ ତା'ର ଗଞ୍ଜାର ବେକ । ଏହା ଭିତରେ ସେ ଆଉ ଗୋଟିଏ ଗାଁବାଟେ ଗଲାବେଳେ କୁକୁରମାନେ ତାକୁ ଦେଖି ଭୁକିଲେ । ତା' ପଛରେ ଧାଇଁଲେ ।

ଗଞ୍ଜାର ବେକ ବେଶ୍ ଟାଣ । କୋକଶିଆଳୀ ପାଟିରେ ଥାଇ ବି ସେ ଜୀବିତ । ସେ ତା'ର ସାହସ ହରାଇନଥାଏ । ମୁକ୍ତିପାଇଁ ସେ ଏକ କୌଶଳ ପାଞ୍ଚିଲା । ସେ କୋକଶିଆଳୀକୁ କହିଲା— "ବଡ଼ଅପା, ତୁମେ ଏପରି ଗୁନ୍ଗୁନିଆ ହୋଇ କାହିଁକି ଧାଉଁଛ ? କୁକୁରମାନଙ୍କୁ କୁହ—ଏ ଶିକାର ତମର ଅନ୍ୟ ଗ୍ରାମର । ଏଣୁ ସେମାନଙ୍କର ଏଥିରେ ଅଧିକାର କିଛି ନାହିଁ ।"

କୋକଶିଆଳୀ କିଛି ଚିନ୍ତା କଲା ନାହିଁ । ସେ ଠିଆ ହୋଇ ଗଞ୍ଜା ଯାହା କହିଥିଲା, କୁକୁରମାନଙ୍କୁ ତାହା କହିଲା । ଫଳରେ ତାର ପାଟି ମେଲା ହୋଇଗଲା । ଗଞ୍ଜାଟି ଉଡ଼ିଯାଇ ପାଖ ଗଛରେ ବସିଲା ।

ଏହା ଦେଖି କୋକଶିଆଳୀ ଓ କୁକୁରମାନେ ସ୍ତମ୍ଭୀଭୂତ କୋକଶିଆଳୀ ତାର ତ୍ରୁଟିପାଇଁ ଦୁଃଖିତ । ଏକ ଦୀର୍ଘ ନିଃଶ୍ୱାସ ପକାଇ ସେ ହତାଶ ଭାବରେ ଗଞ୍ଜାକୁ ଚାହିଁ କହିଲା—"ବିନା ଦରକାରରେ ଯେ ପାଟି ଖୋଲେ, ତା'ପାଟି ପୋଡ଼ିଯାଉ ।"

ନିରାପଦରେ ଗଛରେ ବସି ଗଞ୍ଜା କହିଲା—"ବିନା ଦରକାରରେ ଯେ ଆଖି ବୁଜେ, ତା'ଆଖି ପୋଡ଼ିଯାଉ ।" ●

# ପୃଥିବୀର ଲୋକକଥା

(୧) ଭିଏତ ନାମ, (୨) ଲାଦାଖ-୧, (୩) ଲାଦାଖ-୨, (୪) ପଞ୍ଜାବ-୧ (୫) ପଞ୍ଜାବ-୨, (୬) ପଞ୍ଜାବ-୩, (୭) ପଞ୍ଜାବ-୪, (୮) ପଞ୍ଜାବ-୫, (୯) ଉତ୍ତର ପ୍ରଦେଶ-୧, (୧୦) ଉତ୍ତପ୍ରଦେଶ-୨, (୧୧) ପଞ୍ଜାବ-୬, (୧୨) ଉତ୍ତର ପ୍ରଦେଶ-୩, (୧୩) ପଞ୍ଜାବ-୭, (୧୪) ଉତ୍ତର ପ୍ରଦେଶ-୪, (୧୫) ମଧ୍ୟ ପ୍ରଦେଶ-୧, (୧୬) କାଶ୍ମୀର-୧, (୧୭) ଆସାମ-୧, (୧୮) କାଶ୍ମୀର-୨, (୧୯) କାଶ୍ମୀର-୩, (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧, (୨୨) ଆସାମ-୨, (୨୩) ଶ୍ରୀଲଙ୍କା-୧, (୨୪) ଓଡ଼ିଆ-୧, (୨୫) ଇହୁଦୀ-୨, (୨୬) ସାନ୍ତାଳ-୧ (୨୭) ଇଟାଲି-୧, (୨୮) ମଧ୍ୟ ପ୍ରଦେଶ-୨, (୨୯) ଶ୍ରୀଲଙ୍କା-୨, (୩୦) ସାନ୍ତାଳ-୨, (୩୧) ସାନ୍ତାଳ-୩, (୩୨) ସାନ୍ତାଳ-୪, (୩୩) ସାନ୍ତାଳ-୫), (୩୪) ସାନ୍ତାଳ-୬, (୩୫) ସାନ୍ତାଳ-୭, (୩୬) ନେପାଳ-୧, (୩୭) ହରିୟାନା-୧, (୩୮) ସାନ୍ତାଳ-୮, (୩୯) ସାନ୍ତାଳ-୯, (୪୦) ସାନ୍ତାଳ-୧୦, (୪୧) ସାନ୍ତାଳ-୧୧, (୪୨) ସାନ୍ତାଳ-୧୨, (୪୩) ସାନ୍ତାଳ-୧୩, (୪୪) ସାନ୍ତାଳ-୧୪, (୪୫) କନ୍ଧ-୧, (୪୬) ନେପାଳ-୨ (୪୭) ତିବ୍ବତ-୧, (୪୮) ଇହୁଦୀ-୩, (୪୯) ଇହୁଦୀ-୪, (୫୦) ଜାପାନ-୧, (୫୧) ତାମିଲ୍‌ନାଡୁ-୧, (୫୨) ତାମିଲ୍‌ନାଡୁ-୨, (୫୩) ତାମିଲ୍‌ନାଡୁ-୩, (୫୪) ତିବ୍ବତ-୨, (୫୫) ଫିଲ୍‌ପାଇନ୍-୧, (୫୬) ଫିଲ୍‌ପାଇନ୍-୨, (୫୭) ଚୀନ୍-୧, (୫୮) ଫ୍ରାନ୍‌ସ-୧, (୫୯) ଫ୍ରାନ୍‌ସ-୨ (୬୦) ସ୍କଟ୍‌ଲ୍ୟାଣ୍ଡ୍-୧ ।

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ.: ଦିଘାଳ, ଜିଲ୍ଲା : ପୁରୀ
ମହାନ୍ତିପଡ଼ା, କାଫଲା, କଟକ-୨

**ପ୍ରାପ୍ତି ସ୍ଥାନ :** ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମବାଡ଼ି, କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।